# ହଜାରେ ଚଉରାଶୀର ମା

ମୂଳ ରଚନା : ମହାଶ୍ୱେତା ଦେବୀ

ଭାଷାନ୍ତର : ଶ୍ରୀ ଗୋବିନ୍ଦ ଚନ୍ଦ୍ର ସାହୁ



**ଶ୍ରୀଯୁକ୍ତ ସାହୁଙ୍କର**
**ପ୍ରକାଶିତ ଅନ୍ୟାନ୍ୟ ପୁସ୍ତକ :**

- ଚିରନ୍ତନୀ (ସୁକ୍ତି ସଂକଳନ)
- ଭାରତୀୟ କରଣ
- ପଇସା ପରମେଶ୍ୱର
- ଗୃହ ନିର୍ମାଣ
  (ଓଡ଼ିଶା ବିଜ୍ଞାନ ଏକାଡେମୀ ଦ୍ୱାରା ପୁରସ୍କୃତ)
- ପଦ୍ମାନଦୀର ମାଝି
  (କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ)

# ହଜାରେ ଚଉରାଶୀର ମା'

ମୂଳ ରଚନା : ମହାଶ୍ୱେତା ଦେବୀ

ଅନୁବାଦ : ଶ୍ରୀ ଗୋବିନ୍ଦ ଚନ୍ଦ୍ର ସାହୁ

ପ୍ରକାଶକ :
**ଜଗନ୍ନାଥ ରଥ**
ପୁସ୍ତକ ପ୍ରକାଶକ ଓ ବିକ୍ରେତା
ବିନୋଦବିହାରୀ, କଟକ - ୨

ପ୍ରଚ୍ଛଦ :
**ରଂଜିତ୍ ପରିଜା**

ପ୍ରଥମ ସଂସ୍କରଣ :
**କାର୍ତ୍ତିକ ପୂର୍ଣ୍ଣିମା, ୨୦୦୦**

ଅକ୍ଷର ସଜ୍ଜା :
**ଶୌର୍ଯ୍ୟ ପ୍ରକାଶନ**
ଓଡ଼ିଆ ବଜାର, କଟକ- ୧

ମୁଦ୍ରଣ :
**ସାଥୀ ଅଫ୍‌ସେଟ୍,**
ଓଡ଼ିଆ ବଜାର, କଟକ- ୧

ମୂଲ୍ୟ : ଟ ୫୦/-

**Hajare Chourasira Maa**

*Written by*
**Mahasweta Devi**
*Translated by*
**Sri Gobinda Ch. Sahu**

*Published by*
**M/s Jagannath Ratha**
Publishers & Booksellers
Binodbehari,Cuttack-753 002

*Cover Designed by*
**Ranjit parija**

*First Edition*
**Kartika Purnima , 2000**

*Letter setting by*
**Sourjya Prakashan**
Oriya Bazar, Cuttack-1

*Printed at*
**Sathi Offset**
Oriya Bazar, Cuttack-1

*Price*
**Rs. 50/-**

୨

ସଂସାରରେ କୁପୁତ୍ର ଜନ୍ମ ଗ୍ରହଣ କରିପାରନ୍ତି ;
କିନ୍ତୁ କେବେ କୁମାତା ନୁହେଁ ।
ଏହି ଅନୂଦିତ ପୁସ୍ତକ ସେହିମାନଙ୍କ ଉଦ୍ଦେଶ୍ୟରେ
ଯେଉଁମାନଙ୍କ ହାତରେ ଦେଶର ଭାବୀ ବଂଶଧରମାନଙ୍କୁ
ସୁନାଗରିକ କରି ଗଢ଼ି ତୋଳିବାର ଦାୟିତ୍ୱ ।
ବର୍ଷା , ଲିସା , ନନୀ
ଓ
ଅନ୍ୟମାନେ....

# ମୁଖବନ୍ଧ

'ହଜାରେ ଚଉରାଶୀର ମା' ମହାଶ୍ୱେତା ଦେବୀଙ୍କର ସତୁରୀ ଦଶକରେ ଲିଖିତ ସୁପ୍ରସିଦ୍ଧ ଓ ବହୁଚର୍ଚ୍ଚିତ ଉପନ୍ୟାସ । ମହାଶ୍ୱେତା ଦେବୀ ବଙ୍ଗଳା ସାହିତ୍ୟର ଜଣେ ପ୍ରଥିତଯଶା ଲେଖିକା । ସେ ଜ୍ଞାନପୀଠ ଓ ମାଗାସେସ୍ ପୁରସ୍କାର ଲାଭ କରିଛନ୍ତି । ଏହି ଉପନ୍ୟାସର କଥାବସ୍ତୁକୁ ନେଇ ସିନେମା କରାଯାଇଛି ଓ ସିନେମା ମଧ୍ୟ ଯଥେଷ୍ଟ ଆଦୃତ ହୋଇଛି ।

ଅନେକଙ୍କ ମନରେ ବହିଟିର ଏପରି କାହିଁକି ନାମକରଣ ହୋଇଛି ବୋଲି ସ୍ୱତଃ ପ୍ରଶ୍ନ ଉଠେ । ନକ୍‌ସାଲ ଆନ୍ଦୋଳନର ପୃଷ୍ଠଭୂମି ଉପରେ ଏହି ଉପନ୍ୟାସଟି ଲିଖିତ । ଯୁବ ସଂପ୍ରଦାୟ ସେହି ଆଦର୍ଶରେ ଉଦ୍‌ବୁଦ୍ଧ ହୋଇ ଆନ୍ଦୋଳନରେ ଭାଗ ନିଅନ୍ତି । କଲିକତା ନଗରୀରେ ପୋଲିସ୍ ଗୁଳିରେ ଅନେକ ମୃତ୍ୟୁବରଣ କରନ୍ତି । ଜେଲରେ ଯେପରି କଏଦୀମାନଙ୍କର ନମ୍ବର କରାଯାଏ, ସେହିପରି ପୋଲିସ୍ ଗୁଳିରେ ମୃତ ଶବଗୁଡିକୁ ନମ୍ବର କରାଯାଇଛି । ୧୦୮୪ କ୍ରମିକ ନମ୍ବର ଶବ ହେଉଛି ତରୁଣ ବ୍ରତୀର, ଯିଏ ବିଶ୍ୱାସଘାତକତାର ଶିକାର ହୋଇଛି । ହତଭାଗିନୀ ଓ ଶୋକାତୁରା ସୁଜାତା ହେଉଛନ୍ତି ସେହି ବିପ୍ଳବୀ ବ୍ରତୀର ମାଆ । ଅକାଳରେ ପୁଅର ଏପରି ମୃତ୍ୟୁ ପାଇଁ ସେ ନିଜକୁ ପୁରାପୁରି ଦାୟୀ କରିଛନ୍ତି ।

ବ୍ରତୀର ଯେଉଁଦିନ ମୃତ୍ୟୁବାର୍ଷିକୀ, ଠିକ୍ ସେହିଦିନକୁ ସ୍ଥିର ହୋଇଛି ତା' ସାନଭଉଣୀ ତୁଲୀର ନିର୍ବନ୍ଧ । ପୁନଶ୍ଚ ଏହି ନିର୍ବନ୍ଧକୁ ଆମନ୍ତ୍ରିତ ହୋଇଛନ୍ତି, ପୋଲିସ୍ ଅଫିସର ସରୋଜ ପାଲ ଯାହାଙ୍କ ଇଙ୍ଗିତରେ ବ୍ରତୀ ଓ ତାର ବନ୍ଧୁମାନଙ୍କୁ ଅତ୍ୟନ୍ତ ନିର୍ମମ ଭାବରେ ହତ୍ୟା କରାଯାଇଛି । ଏହା ଏକ ଅଦ୍ଭୁତ ଯୋଗାଯୋଗ । ସୁଜାତା ଏଥିରେ ଗଭୀର ମର୍ମାହତ ହୋଇଛନ୍ତି; ହେବା ସ୍ୱାଭାବିକ । ବ୍ରତୀ ବ୍ୟତୀତ ସ୍ୱାମୀ ଦିବ୍ୟନାଥ, ଅନ୍ୟ ପୁଅ, ବୋହୁ, ଝିଅ ଓ ଜ୍ୱାଇଁ ପ୍ରଭୃତିଙ୍କ ସ୍ୱାର୍ଥପରତା ତଥା ଅନୈତିକତାରେ ସେ ଅତିଷ୍ଠ ଏବଂ ମ୍ରିୟମାଣ ହୋଇ ପଡ଼ିଛନ୍ତି । ତାଙ୍କର ମାନସିକ ଯନ୍ତ୍ରଣା ଚରମ ସୀମାରେ ପହଞ୍ଚିଛି । ସେହି ରୁକ୍ଷ ବେଦନାର ନିଖୁଣ ଅଭିବ୍ୟକ୍ତିର ପରିପ୍ରକାଶ ହୋଇଛି ଏହି ଉପନ୍ୟାସରେ ।

ବଙ୍ଗଳା ବହିଟିକୁ ପଢ଼ିବା ପରେ ଏହାକୁ ଓଡ଼ିଆରେ ଭାଷାନ୍ତର କରିବା ପାଇଁ ମହାଶ୍ୱେତା ଦେବୀଙ୍କୁ ୧୯୯୭ ମସିହାରେ ଅନୁରୋଧ କଲି । ତାଙ୍କଠାରୁ ଅନୁମତି ମିଳିଲା ୧୯୯୮ ମସିହା ଏପ୍ରିଲ ମାସରେ । ସେଥିପାଇଁ ମୁଁ ତାଙ୍କୁ ଗଭୀର କୃତଜ୍ଞତା ଜଣାଉଛି ।

ସରକାରୀ ଚାକିରି ଜଞ୍ଜାଳରେ ବ୍ୟସ୍ତ ରହି ଏହି କାର୍ଯ୍ୟ କରିବାରେ ମୋର ଢ଼େର ବିଳମ୍ବ ଘଟିଛି । ମେ’ ୨୦୦୦ରେ ଅବସର ଗ୍ରହଣ କରିବା ପରେ ପ୍ରଥମ କାର୍ଯ୍ୟ ହେଲା, କିପରି ବହିଟିକୁ ଯଥାଶୀଘ୍ର ଲୋକଲୋଚନକୁ ଆଣିବା । ସେଥିପାଇଁ ମୋର ସହଧର୍ମିଣୀ ପ୍ରିୟମ୍ବଦାର ପ୍ରେରଣା ଅନସ୍ୱୀକାର୍ଯ୍ୟ । ପୁସ୍ତକଟିକୁ ଯଥାଶୀଘ୍ର ପ୍ରକାଶ କରିଥିବାରୁ ଓଡ଼ିଶାର ଅନ୍ୟତମ ପ୍ରତିଷ୍ଠିତ ପୁସ୍ତକ ପ୍ରକାଶନ ସଂସ୍ଥା “ଜଗନ୍ନାଥ ରଥ” ର ପରିଚାଳକ ମନୋହର ଶୁଭେନ୍ଦୁକୁ ମୋର ଆନ୍ତରିକ ଶୁଭେଚ୍ଛା ଜଣାଉଛି ।

ଶେଷରେ ପୁସ୍ତକଟି ବିଜ୍ଞ ପାଠକପାଠିକାମାନଙ୍କ ଦ୍ୱାରା ଆଦୃତ ହେଲେ ମୋର ଶ୍ରମ ସାର୍ଥକ ହେବ ।

ଆନନ୍ଦ ଭବନ
ଅମରାବତୀ ପାଟଣା
ଛତିଆ, ଯାଜପୁର

ଗୋବିନ୍ଦ ଚନ୍ଦ୍ର ସାହୁ
ତା ୨୬/୧୦/୨୦୦୦
କାଳୀପୂଜା

# ।। ସକାଳ ।।

ସ୍ୱପ୍ନରେ ସୁଜାତା ବାଇଶ ବର୍ଷ ପୂର୍ବର ଏକ ସକାଳକୁ ଫେରିଯାଇଥିଲେ । ଏହିପରି ପ୍ରାୟ ସ୍ୱପ୍ନରେ ସେ ଫେରିଯା'ନ୍ତି । ନିଜେ ନିଜର ବ୍ୟାଗ୍ ସଜାଡ଼ନ୍ତି, ତଉଲିଆ, ଜାମା, ଶାଢ଼ୀ, ଟୁଥ୍‌ବ୍ରଶ୍ ଓ ସାବୁନ୍ । ସୁଜାତାଙ୍କ ବୟସ ବର୍ତ୍ତମାନ ତେପନ । ସ୍ୱପ୍ନରେ ସେ ଏକତ୍ରିଶ ବର୍ଷ ବୟସର ସୁଜାତାଙ୍କୁ ଦେଖନ୍ତି, ଯିଏ ବ୍ୟାଗ୍ ସଜାଡ଼ିବାରେ ବ୍ୟସ୍ତ ! ଗର୍ଭଭାରରେ ଶରୀର ମନ୍ଥର-ସେତେବେଳେ ଯୁବତୀ ସୁଜାତା ବ୍ରତୀକୁ ପୃଥିବୀକୁ ଆଣିବା ସକାଶେ ଗୋଟି ଗୋଟି କରି ଜିନିଷ ବ୍ୟାଗ୍‌ରେ ପୂରାନ୍ତି । ସେହି ସୁଜାତାଙ୍କ ମୁହଁ ବାରମ୍ବାର ଯନ୍ତ୍ରଣାରେ କୁଞ୍ଚିତ ହୁଏ, ଦାନ୍ତ ଓଠ ଚିପି କାନ୍ଦ ସମ୍ଭାଳି ନିଅନ୍ତି ସୁଜାତା । ସ୍ୱପ୍ନରେ ସୁଜାତା ଦେଖନ୍ତି ବ୍ରତୀ ଆସୁଛି !!

ସେଦିନ ରାତି ଆଠଟାରୁ ଯନ୍ତ୍ରଣା ଆରମ୍ଭ ହୋଇଯାଇଥିଲା । ହେମ ନିଜ ଅଭିଜ୍ଞତାରୁ କହିଲା, ମା' ପେଟ ତଳକୁ ଓହଳି ପଡ଼ିଲାଣି, ଆଉ ଡେରି ହେବନି । ହେମ ତାଙ୍କର ହାତ ଧରି କହିଥିଲା, ସୁରୁଖୁରୁରେ ମା' ପିଲା ଦୁହେଁ କେମିତି ଭଲରେ ଭଲରେ ଫେରିଆସ ।

ଯନ୍ତ୍ରଣା ଅସହ୍ୟ ହେଉଥିଲା, ଭୟଙ୍କର ଯନ୍ତ୍ରଣା । ଯେକୌଣସି ମୁହୂର୍ତ୍ତରେ ସନ୍ତାନ ଭୂମିଷ୍ଠ ହୋଇପାରେ ବୋଲି ସୁଜାତା ପୂର୍ବଦିନରୁ ରହିଛନ୍ତି ନର୍ସିଂହୋମ୍‌ରେ । ସେତେବେଳେ ଜ୍ୟୋତିର ବୟସ ଦଶ ବର୍ଷ, ନୀପାକୁ ଆଠ ଓ ତୁଲୀକୁ ଛଅ । ଶାଶୁ ସେ ସମୟରେ ସୁଜାତାଙ୍କ ପାଖରେ ଥିଲେ ବୋଲି ମନେ ଅଛି । ଜ୍ୟୋତିର ବାପା ଶାଶୁଙ୍କର ଏକମାତ୍ର ସନ୍ତାନ । ଏହି ଗୋଟିଏ ସନ୍ତାନ ପରେ ଶାଶୁ ବିଧବା ହୋଇଥିଲେ । ତେଣୁ ସୁଜାତାଙ୍କର ବାରମ୍ବାର ସନ୍ତାନ ହେବା ସେ ସହଜରେ ଗ୍ରହଣ କରିପାରୁ ନଥଲେ; ଭୟଙ୍କର ବିଦ୍ୱେଷ ମନରେ ପୋଷୁଥିଲେ । ଠିକ୍ ସନ୍ତାନ ହେବାର ପୂର୍ବରୁ ସେ ଚାଲି ଯାଉଥିଲେ ନିଜ ଭଉଣୀ ଘରକୁ, ସୁଜାତାଙ୍କୁ ଏକୁଟିଆ ସଂପୂର୍ଣ୍ଣ ଅସହାୟ ଅବସ୍ଥାରେ ଅତଳ ସାଗରରେ ଭସେଇ ଦେଇ ।

ସ୍ୱାମୀ ସଫେଇ ଦିଅନ୍ତି-ମାଆଙ୍କ ହୃଦୟ ଭାରି କୋମଳ, ବୁଝିଲ ? ସେ ଏସବୁ, ମାନେ ଦୁଃଖ, ଯନ୍ତ୍ରଣା, ଚିତ୍କାର ଆଦୌ ସହ୍ୟ କରିପାରନ୍ତି ନାହିଁ । ଅଥଚ ସୁଜାତା, କେବେହେଲେ ପାଟିତୁଣ୍ଡ କରନ୍ତିନି କିମ୍ବା ଭୟଭୀତ ହୁଅନ୍ତି ନାହିଁ । ଦାନ୍ତରେ ଓଠ କାମୁଡ଼ି ଧରି ଘରର ଓ ପିଲାମାନଙ୍କର ସବୁ ଦାୟୀତ୍ୱ ସମ୍ଭାଳନ୍ତି । ସେଥର ଶାଶୁ ଏଠାରେ ଥିବାର କାରଣ; ତାଙ୍କ ଭଉଣୀ କଲିକତାରେ ନଥିଲେ । ମନେ ଅଛି ଜ୍ୟୋତିର ବାପା କାମରେ କାନପୁର ଯାଇଥିଲେ । ଦିବ୍ୟନାଥ ମଧ୍ୟ ଜାଣି ନଥିଲେ ଯେ ଏଥର ମା' ରହିଯିବେ ବୋଲି । ସେ ରୁହନ୍ତିନି । ଏଥର ରହିବେନି ଏତିକି ସେ ଜାଣନ୍ତି । ତଥାପି ସୁଜାତାଙ୍କ ପାଇଁ ଦିବ୍ୟନାଥ

କୌଣସି ବ୍ୟବସ୍ଥା କରିଯାଇ ନଥିଲେ । କୌଣସି ଦିନ କରନ୍ତି ନାହିଁ । ସୁଜାତା ବାଥରୁମ୍ ଯାଇ ଯନ୍ତ୍ରଣାରେ ଥରି ଉଠିଥିଲେ । ରକ୍ତ ଦେଖି ଭୟ ପାଇଥିଲେ । ନିଜେ ସବୁ ଜିନିଷ ଠିକ୍ ଠାକ୍ କରି ପୁଝାରୀଙ୍କୁ ଟ୍ୟାକ୍ସି ଡାକିବାକୁ କହିଥିଲେ ।

ନର୍ସିଂହୋମ ଯାଇଥିଲେ ଏକୁଟିଆ, ଡାକ୍ତର ତାଙ୍କର ଅବସ୍ଥା ଦେଖି ଗମ୍ଭୀର ହୋଇ ଯାଇଥିଲେ । ଖୁବ୍ ଭୟ ପାଇଥିଲେ । ସୁଜାତାଙ୍କ ଆଖି ଯନ୍ତ୍ରଣାରେ ଝାପ୍‌ସା ହୋଇ ଉଠୁଥିଲା, ଯେପରି କି ଆଖି ଉପରେ ଅସ୍ୱଚ୍ଛ କାଚ ଖଣ୍ଡଟିଏ କିଏ ଢ଼ାଙ୍କି ଦେଉଛି । ଅତି କଷ୍ଟରେ ଆଖି ଖୋଲି ସୁଜାତା ଡାକ୍ତରଙ୍କୁ ପଚାରିଥିଲେ ମୁଁ ଠିକ୍ ଅଛି ତ ?

- ନିଶ୍ଚୟ ।

- ମୋ ପିଲା ?

- ଆପଣ ଶୁଅନ୍ତୁ !

- କ'ଣ କରିବେ ?

- ଅପରେସନ୍ ।

- ଡାକ୍ତର ବାବୁ, ମୋ ପିଲା ?

- ଆପଣ ଶୋଇ ପଡ଼ନ୍ତୁ । ମୁଁ ତ ଅଛି । ଏକାଏକା ଆସିଲେ କିପରି ?

- ସେ ନାହାଁନ୍ତି ।

ସୁଜାତା ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ସେତ କେବେ ଆଶା କରିନାହାଁନ୍ତି ଯେ ଦିବ୍ୟନାଥ କଲିକତାରେ ଥିଲେ ମଧ ତାଙ୍କ ସାଙ୍ଗରେ ଆସିବେ ବୋଲି; ଡାକ୍ତର କାହିଁକି ଆଶା କରୁଛନ୍ତି ? ଦିବ୍ୟନାଥ କେବେ ସାଙ୍ଗରେ ଆସନ୍ତି ନାହିଁ କିମ୍ବା ସମୟ ହେଲେ ସୁଜାତାଙ୍କୁ ଡାକ୍ତରଖାନା ନିଅନ୍ତି ନାହିଁ । ନବଜାତ ଶିଶୁର କାନ୍ଦରେ ନିଦ ବ୍ୟାଘାତ ହେବ ବୋଲି ସେ ତିନିତାଲାରେ ଶୁଅନ୍ତି । ସନ୍ତାନମାନଙ୍କର ଦେହ ଖରାପରେ ମଧ ରାତିରେ ଉଠି କେବେ ଖୋଜ ଖବର ନିଅନ୍ତି ନାହିଁ । ତେବେ ଦିବ୍ୟନାଥ ଲକ୍ଷ୍ୟ କରନ୍ତି, ସୁଜାତାଙ୍କୁ ନିରେଖି କରି ଦେଖନ୍ତି-ପୁନର୍ବାର ମାଆ ହେବାର ଯୋଗ୍ୟ ଶରୀର ସୁଜାତା ପାଇଲେଣି ନା ନାହିଁ । ନିୟମିତ ଟନିକ୍ ଖାଉଛ ତ ? ଗମ୍ଭୀର ଅଥଚ ବସା ବସା କଣ୍ଠରେ ପ୍ରଶ୍ନ କରନ୍ତି ଦିବ୍ୟନାଥ । କାମନାରେ ଅସ୍ଥିର ହେଲେ ତାଙ୍କ ଗଳାରେ କଫ ଜମାଟ ବାନ୍ଧିଯିବା ପରି ସ୍ୱର ବାହାରେ । ସୁଜାତା ଜାଣନ୍ତି ଦିବ୍ୟନାଥଙ୍କୁ । ଦିବ୍ୟନାଥ ତାଙ୍କ ଶରୀର, ତାଙ୍କ ସ୍ୱାସ୍ଥ୍ୟ ବିଷୟରେ ଖୋଜ ଖବର ନେବାର କେବଳ ଗୋଟିଏ ମାତ୍ର ଅର୍ଥ ସେ ବୁଝନ୍ତି । ଡାକ୍ତର କିପରି ଦିବ୍ୟନାଥଙ୍କୁ ଜାଣିବେ ?

ଡାକ୍ତର ଔଷଧ ଦେଇଥିଲେ ସୁଜାତାଙ୍କୁ । ଔଷଧରେ ମଧ କଷ୍ଟ କମି ନଥିଲା ତାଙ୍କର । ସେହି ସମୟରେ ହଠାତ୍ ସୁଜାତାଙ୍କ ମନ ଗର୍ଭସ୍ଥ ସନ୍ତାନ ନିମନ୍ତେ ଭୀଷଣ ବ୍ୟାକୁଳ

ହୋଇଥିଲା । ତୁଳୀ ଜନ୍ମ ହେବାର ଛ ବର୍ଷ ପ୍ରାୟ ହୋଇଗଲାଣି । ଅନେକ କଷ୍ଟସହି ନିଜକୁ ଏପର୍ଯ୍ୟନ୍ତ ରକ୍ଷାକରି ପାରିଥିଲେ ସୁଜାତା, ଶେଷକୁ ପାରିଲେ ନାହିଁ ।

ସେଥିପାଇଁ ନଅ ମାସଧରି ନିଜକୁ ଅଶ୍ଳୀଳ, ଅଶୁଚି ଲାଗିଥିଲା; ଶରୀରର କ୍ରମ ବର୍ଦ୍ଧମାନ ଭାର ତାଙ୍କୁ ଅଭିଶାପ ଭଳି ବୋଧ ହୋଇଥିଲା । କିନ୍ତୁ ଯେତେବେଳେ ବୁଝିଲେ ତାଙ୍କର ଓ ତାଙ୍କ ଗର୍ଭସ୍ଥ ଶିଶୁର ଜୀବନ ସଙ୍କଟପୂର୍ଣ୍ଣ ହୋଇପାରେ, ସେତେବେଳେ ମନରେ ଭରି ଉଠିଥିଲା ଗଭୀର ବ୍ୟାକୁଳତା, ମମତା । ସୁଜାତା ଡାକ୍ତରଙ୍କୁ ଡାକି ପଠାଇଲେ, କହିଲେ ଅପରେସନ କରି ପିଲାକୁ ବଞ୍ଚାନ୍ତୁ ।

- ତାହାହିଁ କରୁଛି ।

ଡାକ୍ତରଙ୍କ ଇଙ୍ଗିତରେ ନର୍ସ ଇଞ୍ଜେକ୍‌ସନ୍ ଦେଲା । ଯନ୍ତ୍ରଣା ସୁଜାତାଙ୍କ ତଳିପେଟରେ ଖୁଞ୍ଚି ହୋଇ ପଶୁଥିଲା ଓ ବାହାରୁଥିଲା । ଊଣେଇଶିଶହ ଅଠଚାଳିଶ ମସିହା ଷୋଳ ଜାନୁୟାରୀ । ସୁଜାତା ବିଛଣାରେ ଧଳା ଚାଦରକୁ ବାରମ୍ବାର ହାତରେ ମୁଠାଇ ଧରୁଥିଲେ । କପାଳରେ ବିନ୍ଦୁ ବିନ୍ଦୁ ଝାଳ କଣ୍ଟି ଆସୁଥିଲା-ଆଖିତଳ କଳାଦାଗଟା କ୍ରମଶଃ ବଢ଼ି ବଢ଼ି ସ୍ପଷ୍ଟ ହୋଇଉଠୁଥିଲା । ସୁଜାତାଙ୍କୁ ଟିକିଏ ବି ଶୀତ ଲାଗୁନଥିଲା ଅଥଚ ସେବର୍ଷ ଜାନୁୟାରୀ ମାସରେ କି ଭୟଙ୍କର ଶୀତ ପଡିନଥିଲା ସତେ ! ତଳିପେଟର ଯନ୍ତ୍ରଣା, ଖୁଞ୍ଚି ହୋଇ ପେଟ ଭିତରକୁ ପଶୁଛି ଏବଂ ବାହାରୁଛି; ବିଛଣାର ଧଳା ଚାଦରକୁ ମୁଠାଇ, ଝାଳରେ ପୁରା ଓଦା ହୋଇ ସୁଜାତାଙ୍କ ନିଦ ଭାଙ୍ଗିଲା । ପାଖରେ ଜ୍ୟୋତିର ବାପାଙ୍କୁ ଦେଖି ତାଙ୍କ ଗୋରା କପାଳର ଲମ୍ବା ଭ୍ରୂଲତା ଦୁଇଟି କୁଞ୍ଚିତ ହୋଇଗଲା । ଜ୍ୟୋତିର ବାପା ପାଖ ଖଟରେ ଅଛନ୍ତି କାହିଁକି ? ତା’ପରେ ମନେ ପଡ଼ିଲା ପରି ସେ ମୁଣ୍ଡ ହଲାଇଲେ । ବ୍ରତୀ ହେବା ଦିନ ଜ୍ୟୋତିର ବାପା ପାଖରେ ନଥିଲେ ତେଣୁ ସୁଜାତାଙ୍କ ସ୍ୱପ୍ନରେ ମଧ ଦିବ୍ୟନାଥ କେବେ ରହନ୍ତି ନାହିଁ, କିନ୍ତୁ ଏବେ ତ ସୁଜାତା ଆଉ ସ୍ୱପ୍ନ ଦେଖୁନାହାଁନ୍ତି !

ତା’ପରେ ଅତି କଷ୍ଟରେ ହାତ ବଢ଼ାଇ ‘ବାରାଲ୍‌ଗନ’ ବଟିକା ଖାଇଲେ, ଢ଼ୋକେ ପାଣିପିଇ ଲୁଗାକାନିରେ କପାଳରେ ଜମିଥିବା ଝାଳକୁ ପୋଛିଲେ ।

ପୁଣି ଥରେ ଶୋଇଲେ । ବର୍ତ୍ତମାନ ଏକ ରୁ ଶହେ ପର୍ଯ୍ୟନ୍ତ ଗଣିବା ଖୁବ୍ ଦରକାର । ଡାକ୍ତରଙ୍କ ନିର୍ଦ୍ଦେଶ । ଗଣିବା ସମୟରେ କୁଆଡ଼େ କଷ୍ଟ କମିଯାଏ । ଗଣିବା ପାଇଁ ଯେତିକି ସମୟ ଦରକାର ସେତିକି ମଧ୍ୟରେ ବାରାଲ୍‌ଗନ ତା’ କାମ କରେ । ଯନ୍ତ୍ରଣା କମିଯାଏ ।

କ୍ରମଶଃ ଯନ୍ତ୍ରଣା ଉପଶମ ହୁଏ । ସୁଜାତାଙ୍କୁ କ୍ଲାନ୍ତ, ଅବସନ୍ନ ଓ ପରାଜିତ କରି ଯନ୍ତ୍ରଣା ଧୀରେ ଧୀରେ କମେ । ଯନ୍ତ୍ରଣା ଏବେ କମିଛି । ବର୍ତ୍ତମାନ କମିଯିବା ଦରକାର । ଘଣ୍ଟାକୁ ଅନେଇଲେ ସେ । ଛ’ଟା ବାଜିଛି । କାନ୍ଥ ଆଡ଼େ କ୍ୟାଲେଣ୍ଡରକୁ ଅନେଇଲେ । ଜାନୁୟାରୀ ସତର ତାରିଖ । ଷୋହଳ ଜାନୁୟାରୀ ରାତିସାରା ସେ କଷ୍ଟ ପାଇଛନ୍ତି-ଚେତନ,

ଅଚେତନ, ଇଥରର ଗନ୍ଧ, ଉଜ୍ଜ୍ୱଳ ଆଲୋକ, ଆଚ୍ଛନ୍ନ ଯନ୍ତ୍ରଣା ; ସବୁ କେମିତି ଗୋଳିଆ ମିଶା । ପର୍ଦ୍ଦା ସେପଟେ ଡାକ୍ତରମାନଙ୍କର ସାରା ରାତି ବ୍ୟସ୍ତତା, ତା'ପରେ, ତା'ପରେ ଭୋର ସମୟ । ସତର ଜାନୁୟାରୀର ଭୋର୍‌ରେ ବ୍ରତୀର ଜନ୍ମ । ଆଜି ସେହି ଜାନୁୟାରୀ । ଆଜିଠାରୁ ଦୁଇବର୍ଷ ଆଗେ ଏମିତି ଏକ ସତର ଜାନୁୟାରୀ ବଡ଼ି ସକାଳେ ଏହିଁ ଘରେ ଏହି ଭାବରେ ଏହି ଲୋକଟିର ଠିକ୍ ପାଖ ଖଟରେ ଶୋଇଥିଲେ ସୁଜାତା । ପାଖ ଟେବୁଲ୍‌ରେ ଥବା ଟେଲିଫୋନ୍ ହଠାତ୍ ବାଜି ଉଠିଥିଲା ସେଦିନ ।

ଟେଲିଫୋନ୍ ବାଜୁଛି ଜ୍ୟୋତି ରୁମ୍‌ରେ । ଦୁଇବର୍ଷ ଆଗେ, ସେହିଦିନଠାରୁ ଜ୍ୟୋତି ଟେଲିଫୋନ୍‌ଟା ତା' ରୁମ୍‌କୁ ନେଇଯାଇଥିଲା । ବିଚାରବନ୍ତ ଜ୍ୟୋତି ! ତାଙ୍କର ପ୍ରଥମ ସନ୍ତାନ ଓ ଜ୍ୟେଷ୍ଠ ପୁତ୍ର ! ଦିବ୍ୟନାଥଙ୍କର ଅନୁଗତ ଓ ବାଧ୍ୟ ପୁତ୍ର ! ବିନିର ହୃଦୟବାନ୍ ସ୍ୱାମୀ ଓ ସୁମନର ସ୍ନେହବତ୍ସଳ ପିତା ! ବିଚାରବନ୍ତ ଜ୍ୟୋତି ! ଦୁଇବର୍ଷ ଆଗରୁ ସୁଜାତା ଏକାବନ ପାର ହୋଇଥିଲେ, ଜ୍ୟୋତିର ବାପାଙ୍କୁ ସେତେବେଳେ ଛପନ ବର୍ଷ ବୟସ । ନିରାପଦ ବୟସ । ସବୁକିଛି ସୁମାର୍ଜିତ ଓ ସୁଶୃଙ୍ଖଳିତ । ଝିଅକୁ ବାହା ଦେଇଛନ୍ତି । ସାନଝିଅ ନିଜେ ନିଜେ ପାତ୍ର ଠିକ୍ କରିଛି । ବଡ଼ପୁଅ ସୁପ୍ରତିଷ୍ଠିତ । ସାନପୁଅର କଲେଜ ପଢ଼ା ଶେଷ ହେଲେ ବାପା ତା'କୁ ବିଦେଶ ପଠେଇବେ । ସବୁ ଯେମିତି ଠିକ୍ ଠିକ୍, ଶୃଙ୍ଖଳିତ, ସୁନ୍ଦର ଥିଲା । ଖୁବ ସୁନ୍ଦର ।

ଠିକ୍ ସେହି ବୟସରେ ସେହି ସମୟରେ ଟେଲିଫୋନ୍‌ଟା ବାଜି ଉଠିଥିଲା । ସେ ନିଦୁଆ ଆଖିରେ ଫୋନ୍ ଉଠାଇଥିଲେ । ହଠାତ୍ କେହି ଜଣେ ଅଚିହ୍ନା ଅଫିସର କର୍କଶ ସ୍ୱରରେ ପଚାରିଲେ- ବ୍ରତୀ ଚାଟାର୍ଜୀ ଆପଣଙ୍କର କ'ଣ ହୁଏ ?

- ପୁଅ ।

- କାଟାଁ-ପୁକୁର ଶବ ବ୍ୟବଚ୍ଛେଦ ଗୃହକୁ ଆସନ୍ତୁ ।

ହଁ, ସେହି ଅଦୃଶ୍ୟ ରକ୍ତମାଂସହୀନ କଣ୍ଠସ୍ୱର କହିଥିଲା-କାଟାଁ-ପୁକୁର ଆସନ୍ତୁ । ରିସିଭରଟା ହାତରୁ ଖସିପଡିଥିଲା । ଦାନ୍ତରେ ଦାନ୍ତ ପଡ଼ି ଅଚେତ ହୋଇଯାଇଥିଲେ ସେ ।

ଦୁଇବର୍ଷ ଆଗେ ଏମିତି ଏକ ସତର ଜାନୁୟାରୀର ଭୋର୍‌ରେ, ବ୍ରତୀର ଜନ୍ମଦିନରେ ବ୍ରତୀ ପୃଥିବୀରେ ଜନ୍ମ ନେବାର ସମ-ମୁହୂର୍ତ୍ତରେ ଏହି ସୁନ୍ଦର ଆଭିଜାତ୍ୟପୂର୍ଣ୍ଣ ଶାନ୍ତ ସୁନ୍ଦର ପରିବାରରେ ଏହି ଟେଲିଫୋନର ଖବର ପରି ଏକ ବିଶୃଙ୍ଖଳ, ଏକ ବେହିସାବି ଘଟଣା ଘଟିଥିଲା । ସେଥିପାଇଁ ଜ୍ୟୋତି ଟେଲିଫୋନ୍‌ଟା ଏ ଘରୁ ନେଇଯାଇଥାଇପାରେ । ସୁଜାତା ଏକଥା ଜାଣି ନଥିଲେ । ତିନିମାସ ଧରି ସୁଜାତା କିଛି ବି ଜାଣିପାରୁ ନଥିଲେ । ଆଖି ଉପରେ ହାତ ଘୋଡ଼ାଇ ସେ ସେମିତି ବିଛଣାରେ ପଡ଼ି ରହୁଥିଲେ । ଚିତ୍କାର କରି ସେ ମଧ କେବେ କାନ୍ଦି ନଥିଲେ । ଏକମାତ୍ର ହେମ ହିଁ ତାଙ୍କ ପାଖରେ ଦିନରାତି ଜଗି ବସି ରହୁଥିଲା ।

ସେ ସୁଜାତାଙ୍କୁ ନିଦ ଔଷଧ ଖୁଆଉଥିଲା ଓ ସବୁବେଳେ ତାଙ୍କ ହାତ ଧରି ବସି ରହୁଥିଲା ।

ଟେଲିଫୋନ୍‌ଟା ଏ ଘରୁ ନିଆଯିବା କଥାଟା ସେ ଜାଣିପାରି ନଥିଲେ । ତିନିମାସ ପରେ ସୁଜାତା ପୁଣି ବ୍ୟାଙ୍କକୁ ଯିବା ଆରମ୍ଭ କଲେ । ପୁଣି ଜ୍ୟୋତି, ନୀପା ଓ ତୁଲୀଙ୍କ ସଙ୍ଗେ ସହଜ ଭାବରେ କଥାବାର୍ତ୍ତା କଲେ । ଜ୍ୟୋତିର ପୁଅ ନାତି ସୁମନର ପେନ୍‌ସିଲ୍ କାଟି ମୁନିଆଁ କରିଦେଲେ । ଜ୍ୟୋତିର ସ୍ତ୍ରୀ ବିନିକୁ ନିଜର କଳାଧଡ଼ି ଥିବା ଶାଢ଼ୀ ଧୋବାକୁ ଦିଆଯିବା କଥା ପଚାରିଲେ ।

ଜ୍ୟୋତିର ବାପା ବମ୍ବେ ଯିବା ଆଗରୁ ତାଙ୍କ ବାକ୍ସରେ ଇସବଗୁଲ ଭୁଷି ରଖିବାରେ ଭୁଲି ନଥିଲେ...ଏମିତି ଭାବରେ ସବୁ ଯେତେବେଳେ ସହଜ ଓ ସ୍ୱାଭାବିକ ହୋଇଗଲା, ସେତେବେଳେ ସେ ଲକ୍ଷ୍ୟ କଲେ ଟେଲିଫୋନ୍‌ଟା ତାଙ୍କ ରୁମ୍‌ରୁ ଜ୍ୟୋତି ରୁମ୍‌କୁ ଉଠି ଯାଇଛି ।

ଏକଥା ଜାଣିବା ପରେ ତାଙ୍କ ଭ୍ରୂଲତା କୁଞ୍ଚିତ ହୋଇଉଠିଥିଲା । ସେ ବାରମ୍ବାର ମୁଣ୍ଡ ହଲାଇ ଜ୍ୟୋତିର ମୂର୍ଖାମୀକୁ ନାପସନ୍ଦ କରୁଥିଲେ । ଜ୍ୟୋତିଟା ଏଡ଼େ ମୂର୍ଖ ? ଏବେ ତ ଆଉ ସେଭଳି ଟେଲିଫୋନ୍ ଆସିବା ସମ୍ଭାବନା ନାହିଁ । ଜ୍ୟୋତି ବାପାଙ୍କର ନିଜସ୍ୱ ଚାଟାର୍ଡ ଆକାଉଣ୍ଟ ଫାର୍ମ । ଜ୍ୟୋତି ବ୍ରିଟିଶ କମ୍ପାନୀରେ ମଧ୍ୟମ କ୍ୟାଡରର 'ଏକ୍‌ଜିକ୍ୟୁଟିଭ୍' (executive) । ବଡ଼ ଝିଅ ନୀପାର ସ୍ୱାମୀ 'କଷ୍ଟମ୍‌ସ'(ଶୁଳ୍କ ବିଭାଗ)ର ବଡ ଅଫିସର । ଆଉ ସାନ ଝିଅ ତୁଲୀ, ସେ ଯାହାକୁ ବାହା ହେବ ସେ ହେଲେ ଟୋନି କାପାଡ଼ିଆ, ନିଜେ ଏଜେନ୍ସି ଖୋଲି ଭାରତର ସିଲ୍କ 'ବାଟିକ୍', କାର୍ପେଟ, ପିତ୍ତଳର ନଟରାଜ ମୂର୍ତ୍ତି, ବାଙ୍କୁଡ଼ାର 'ଟେରାକୋଟା' କାମର ମାଟି ଘୋଡା ଆଦି ସୁଇଡ଼େନକୁ ରପ୍ତାନୀ କରୁଛି । ଜ୍ୟୋତିର ଶାଶୁ ଶ୍ୱଶୁର ଇଂଲଣ୍ଡରେ ରହୁଛନ୍ତି ।

ଏମାନେ କେହି ଏପରି ବେହିସାବି, ବିପଜ୍ଜନକ କାମ କରିବେନି ଯେଉଁଥି ପାଇଁ ହଠାତ୍ ଟେଲିଫୋନ୍ ଆସିବ ବା କାଁଟା-ପୁକୁରର ଶବ ବ୍ୟବଚ୍ଛେଦ ଘରକୁ ତାଙ୍କୁ ଦୌଡି ଯିବାକୁ ପଡ଼ିବ ।

ଏଭଳି ନିର୍ବୋଧତା ଅନ୍ତତଃ କାହାର ହେବନି ଯେଉଁଥି ପାଇଁ ଜ୍ୟୋତି ଓ ତା'ବାପାଙ୍କୁ ଉପର ମହଲାରେ ଧରାଧରି କରିବାକୁ ପଡ଼ିବ, ଆଉ ସୁଜାତା ଓ ତୁଲୀଙ୍କୁ ଏକା ଏକା କାଁଟା-ପୁକୁର ଯିବାକୁ ପଡ଼ିବ ।

ଏମାନେ କେହି ଏହି ଧରଣର ଅପରାଧ କରିବେନି ଯାହା ପାଇଁ କାଁଟା-ପୁକୁର ଠାରେ ସେମାନଙ୍କୁ ମୃତବତ୍ ପଡି ରହିବାକୁ ହେବ । ହାତରେ ମୋଟା ଚାଦର ଧରି ଡମମାନେ ଛିଡା ହୋଇଥିବେ ଆଉ ଥାନା ବାବୁ ପଚାରୁଥିବେ, ତୁମେ ନିଜ ପୁଅକୁ ଚିହ୍ନି ପାରୁଛ ତ ?

ଏମାନେ ସମସ୍ତେ ଖୁବ୍ ବିବେକୀ, ନିୟମ, ଶୃଙ୍ଖଳାମାନି ଚାଲୁଥିବା ସୁନାଗରିକ । ଏମାନେ ସୁଜାତାଙ୍କୁ ଏପରି କୌଣସି ପ୍ରକାର ଅସୁବିଧାଜନକ ପରିସ୍ଥିତିରେ ପକେଇବେ

ନାହିଁ । ସତ କହିବାକୁ ଗଲେ ଏମାନଙ୍କ ଦୃଷ୍ଟିରେ ତାଙ୍କ ପୁଅର ମୃତ୍ୟୁ ଏପରି କଳଙ୍କିତ ଭାବରେ ଘଟିଛି ଯେ ଘଟଣାଟିକୁ କୌଣସି ଉପାୟରେ ଧରାଧରି କରି ଚପାଇ ଦେବାକୁ ପଡିବ ।

ଟେଲିଫୋନ୍‌ରେ ଖବର ପାଇବା ପରେ ଏ ଖବରକୁ କିପରି ଚପାଇ ଦେବାକୁ ହେବ ସେ କଥା ଜ୍ୟୋତି ବାପାଙ୍କର ପ୍ରଥମ ଚିନ୍ତା ଥିଲା । କାଁଟାପୁକୁର ଯିବାକୁ ସେ ଜରୁରୀ ମନେ କରିନଥିଲେ । ଜ୍ୟୋତି ତାଙ୍କରି ଭାବାଦର୍ଶରେ ଗଢ଼ା । ସେଦିନ ସେ ବାପାଙ୍କ ସହ ବାହାରି ପଡିଥିଲା । ଦିବ୍ୟନାଥ ନିଜ କାର ନେଇ ସୁଜାତାଙ୍କୁ ଥାନାକୁ ଯିବାକୁ ଦେଇ ନ ଥିଲେ । କାଁଟାପୁକୁର ଥାନା ଆଗରେ ତାଙ୍କ ଗାଡ଼ି ଠିଆ ହୋଇ ରହିବ-ଏହା କେବେ ସମ୍ଭବ ? କେହି ଯଦି ଗାଡ଼ି ଦେଖି ନିଏ ?

ସେ ଦିନ ବ୍ରତୀର ମୃତ୍ୟୁ ସହ ସୁଜାତାଙ୍କ ମନରୁ ତା ବାପାଙ୍କ ମୃତ୍ୟୁ ମଧ ଘଟିଥିଲା; କାରଣ ସେହି ମୁହୂର୍ତ୍ତରେ ତାଙ୍କ ବ୍ୟବହାର ସୁଜାତାଙ୍କ ମନରୁ ସମସ୍ତ ଭ୍ରମ ଦୂର କରିଥିଲା । ତାହା ଥିଲା ଏକ ଉଲ୍‌କାପାତ-ସଦୃଶ । ବିରାଟ ବିସ୍ଫୋରଣ । କୋଟି କୋଟି ବର୍ଷ ପୂର୍ବେ ପୃଥିବୀ ବକ୍ଷରେ ଏପରି ଘଟିଥାଇପାରେ । ସେହି ପ୍ରଚଣ୍ଡ ବିସ୍ଫୋରଣରେ କଠିଣ ପୃଥିବୀ ଖଣ୍ଡବିଖଣ୍ଡିତ ହୋଇ ସାଗର ଓ ମହାଦେଶ ଭାବେ ମୁଣ୍ଡ ଟେକିଲା ।

ଦିବ୍ୟନାଥ ଜାଣି ନଥିଲେ ଯେ ସେ ଦିନର ଏହି ବ୍ୟବହାର ଯୋଗୁଁ ସେ ସୁଜାତାଙ୍କ ମନରୁ ଏତେ ଦୂରେଇ ଯାଇଛନ୍ତି , ସତେ ଯେପରି ସମ୍ପୂର୍ଣ୍ଣ ଭାବେ ମରିହଜି ଯାଇଛନ୍ତି । ମୃତ ବ୍ରତୀ ଅପେକ୍ଷା ଯେତେବେଳେ ନିଜ ମାନସମ୍ମାନ ଓ ନିରାପତ୍ତା ତାଙ୍କ ନିକଟରେ ବଡ଼ ହେଲା; ସେତେବେଳେ ସେ ସୁଜାତାଙ୍କ ପାଖ ଖଟରେ ଶୋଇ ମଧ ତାଙ୍କ ନିକଟରେ ଅସ୍ତିତ୍ୱହୀନ ହୋଇଗଲେ । ଦିବ୍ୟନାଥ ଉପର ମହଲରେ ଧରାଧରି କରିବାରେ ସଫଳ ହୋଇଥିଲେ । ତା'ପର ଦିନ ଚାରୋଟି ପିଲାଙ୍କ ହତ୍ୟା ବିଷୟ ଖବରକାଗଜରେ ବାହାରିଥିଲା । ବ୍ରତୀର ନାଁ କୌଣସି କାଗଜରେ ପ୍ରକାଶିତ ହୋଇ ନଥିଲା ।

ଏପରି ଭାବରେ ବ୍ରତୀକୁ ପୁରାପୁରି ମୂଳ ପୋଛ କରି ଦେଇଥିଲେ ଦିବ୍ୟନାଥ । କିନ୍ତୁ ସୁଜାତା ତା'ପାରି ନଥିଲେ ।

ସେହିଭଳି ବେନିୟମ ଓ ଅସ୍ୱାଭାବିକ ଘଟଣା ଏ ଘରେ ଆଉ ଘଟିବାର ନାହିଁ । ତଥାପି ଜ୍ୟୋତିର ଟେଲିଫୋନ୍ ଉଠାଇ ନେବାରେ ସୁଜାତା ଖୁବ୍ କୌତୁହଳ ଅନୁଭବ କରିଥିଲେ ।

ତାଙ୍କ ଓଠରେ କୌତୁକ ହସ ଦେଖି ବିନି ଏତେ ବେଶୀ ଆଘାତ ପାଇଥିଲା ଯେ ସେ ଝର ଝର କାନ୍ଦି ଜ୍ୟୋତିକୁ କହିଥିଲା ' ମାଆ, କେଡେ ହୃଦୟହୀନ ।' କଥାଟା ସୁଜାତାଙ୍କୁ ଶୁଣେଇ ଶୁଣେଇ କୁହାଗଲା । ସେ ଶୁଣିଲେ, ଅଥଚ କ୍ଷୁର୍ଣ୍ଣ ହେଲେନି । ଯା ପୂର୍ବରୁ ତାଙ୍କର

ମନେ ହେଉଥିଲା, ଅଧିକରୁ ଅଧିକ ମନେ ହେଉଥିଲା ଯେ ବିନି ବ୍ରତୀକୁ ଗଭୀର ସ୍ନେହ କରେ ।

ସେତିକି ବେଳେ ମନେ ହେଉଥିଲା ବିନି ବ୍ରତୀକୁ ଖୁବ୍ ଭଲ ପାଏ । କିନ୍ତୁ ପରବର୍ତ୍ତୀ ସମୟରେ ସେ କଥା ତାଙ୍କର ଆଉ କେବେ ମନେ ହୋଇନି । କାହିଁକି ନା ବାରଣ୍ଡାରେ ଟଙ୍ଗା ହୋଇଥିବା ବ୍ରତୀର ଫଟୋ ସେ ଖୋଜି ମଧ୍ୟ ପାଇନଥିଲେ । ବ୍ରତୀର ଯୋତା ହଳକ ଓ ବର୍ଷାତିକୁ ନ ଦେଖି ସୁଜାତା ବିନିକୁ ପ୍ରଶ୍ନ କରିଥିଲେ, ବିନି ! ଏ ଫଟୋଟା କୁଆଡେ ଗଲା ?

- ତିନିତାଲା ଉପରେ ।

- ତିନି ତାଲାରେ ?

- ବାପା କହିଲେ .....

- ବାପା କହିଲେ !

ବ୍ରତୀ ସଂସାରରୁ ଚାଲିଯିବା ପରେ ମଧ୍ୟ ତାକୁ ନିଶ୍ଚିହ୍ନ କରିବାର ପ୍ରଚେଷ୍ଟା ଦିବ୍ୟନାଥ ଛାଡି ପାରି ନଥିବା ଦେଖି ନୂଆକରି ସେ ଦୁଃଖ ପାଇ ନାହାଁନ୍ତି, ଆଶ୍ଚର୍ଯ୍ୟ ମଧ୍ୟ ହୋଇ ନାହାଁନ୍ତି । କେବଳ ଅବସନ୍ନ ମନରେ ଭାବିଛନ୍ତି, ଦିବ୍ୟନାଥ ସିନା ଏମିତି କଥା କହିପାରନ୍ତି କିନ୍ତୁ ବିନି... ସେ କ'ଣ ପ୍ରତିରୋଧ କରି ପାରିନଥାନ୍ତା ?

କୌଣସି କଥାବାର୍ତ୍ତା ନକରି ସୁଜାତା ବ୍ୟାଙ୍କ୍ ଚାଲିଗଲେ । ବହୁଦିନରୁ ସେ ଏହି ବ୍ୟାଙ୍କ୍ ଚାକିରି କରିଛନ୍ତି । ବ୍ରତୀର ବୟସ ସେତେବେଳେ ତିନିବର୍ଷ । ବ୍ରତୀ ବାପାଙ୍କର ଅଫିସ୍ ଅବସ୍ଥା ସେ ସମୟରେ ଭଲ ନଥାଏ । ଦୁଇଟି ବଡ ଆକାଉଣ୍ଟସ୍‌ର କଣ୍ଟ୍ରାକ୍ଟ ହାତରୁ ଖସି ଯାଇଥାଏ ।

ସେହି ସମୟରେ ଚାକିରି ଆରମ୍ଭ କରିଥିଲେ ସୁଜାତା । ଏଥିପାଇଁ ପରିବାରରେ ସମସ୍ତେ ତାଙ୍କୁ ଯଥେଷ୍ଟ ଉତ୍ସାହ ମଧ୍ୟ ଦେଇଥିଲେ । ଏପରିକି ଶାଶୁ କହିଥିଲେ ଯେ ତା'ର ଚାକିରି କରିବାଟା ଉଚିତ୍ । ତୁମେ ବୋଲି ଘରେ ଏତେ ଦିନ ଯାଏ ବସିଥିଲ । ଦିବୁ ତ ସେମିତି ନୁହେଁ, ନହେଲେ ସେ କେବେଠାରୁ ତୁମକୁ ଚାକିରି କରିବା ପାଇଁ ପଠେଇ ଥାଆନ୍ତା ।

ସୁଜାତା କାହିଁକି ଚାକିରି କରିବାକୁ ଚାହିଁଥିଲେ, କାହିଁକି ନିଜେ ଖୋଜ ଖବର ନେଇ ଯୋଗାଯୋଗ କରିଥିଲେ, ସେ କଥାକୁ କେହି କେବେ ଗୁରୁତ୍ୱ ଦେଇ ନାହାଁନ୍ତି । ତାହା ତାଙ୍କ ପାଇଁ ଶୁଭଙ୍କର ଥିଲା । ଏ ଘରେ ଦିବ୍ୟନାଥ ଓ ତାଙ୍କ ମା' ଘରର ସମସ୍ତଙ୍କ ଉପରେ ଆଧିପତ୍ୟ ଜାରି ରଖିଥିଲେ । ତେଣୁ ସୁଜାତାଙ୍କର ଅସ୍ତିତ୍ୱ ଛାୟା ଭଳି ଅନୁଗତ, ଅନୁଗାମୀ, ନୀରବ ଓ ଅସ୍ତିତ୍ୱହୀନ ହୋଇଯାଇଥିଲା ।

ତାଙ୍କର ଜଣାଶୁଣା ଲୋକ ବ୍ୟାଙ୍କ୍‌ରେ ଥିଲେ । ନଚେତ୍ ଚାକିରିଟା ହୋଇ ନଥାନ୍ତା ।

ସେ ତାଙ୍କର ପରିବାର, ବଂଶ, ପରିଚୟ, ଅଭିଜାତ ଚେହେରା ଓ ବିଶୁଦ୍ଧ ଇଂରାଜୀ ଉଚ୍ଚାରଣ ଯୋଗୁଁ ଚାକିରିଟା ପାଇଥିଲେ । ତାଙ୍କ ପରି 'ଲାରେଟୋ' କଲେଜରୁ ବି.ଏ.ପାସ୍ କରିଥିବା ମହିଳା ତ ବହୁତ ଥିଲେ; ତା' କ'ଣ ସୁଜାତାଙ୍କୁ ଅଗୋଚର ଥିଲା ?

କେବଳ ବ୍ରତୀ କାନ୍ଦିଥିଲା ।

ସ୍ୱପ୍ନରେ, ତାଙ୍କ ସ୍ୱପ୍ନରେ ତିନିବର୍ଷର ବ୍ରତୀ କେତେଥର ଯେ ତାଙ୍କର ଆଣ୍ଠୁକୁ ଜାବୁଡ଼ି ଧରି କାନ୍ଦି କାନ୍ଦି ଅଳି କରିଛି-ମା, ତମେ ଆଜି, ଅନ୍ତତଃ ଆଜି ଦିନଟା ଅଫିସ୍ ଯାଅନି, ମୋ ପାଖରେ ରୁହ ।

ଶ୍ୟାମଳବର୍ଣ୍ଣ, ଦୁର୍ବଳ ସ୍ୱାସ୍ଥ୍ୟ, ମୁଣ୍ଡରେ କେରାଏ ରେଶ୍‌ମୀ ବାଳ, ମମତାଭରା ଆଖି - ସେ ହେଉଛି ବ୍ରତୀ । ମୁକ୍ତିର ଦଶକରେ **ଏକ ହଜାର ତେୟାଅଶୀ ଜଣଙ୍କ ମୃତ୍ୟୁ ପରେ, ଚୌରାଶୀ ନମ୍ବରରେ ତା'ର ନାଆଁ** । କେହି ଯଦି ମୁକ୍ତିର ଦଶକର ଗତ ଅଢ଼େଇ ବର୍ଷରେ ନିହତ ପିଲାଙ୍କ ନାମ ସଂଗ୍ରହ କରିଥିବ ତେବେ ସେ କ'ଣ ବ୍ରତୀର ନାଁ ଖୋଜି ପାଇପାରିବ ? ଖବରକାଗଜରୁ ଯଦି ନାଁ ଖୋଜିବ ତେବେ ବ୍ରତୀକୁ କେହି କେବେ ପାଇପାରିବନି ?

ବ୍ରତୀର ବାପା ତା' ନାଁ ଖବର କାଗଜରେ ପ୍ରକାଶ ହେବାକୁ ଦେଇନାହାଁନ୍ତି ।

ବ୍ରତୀ ଚାଟାର୍ଜୀ ?

ଆପଣ ତା'ର କ'ଣ ହୁଅନ୍ତି ?

ନାଁ, ମୁହଁଟା ଦେଖିବାକୁ ହେବନି ।

ଚିହ୍ନଟ କରିବା ପାଇଁ ଦେହରେ କୌଣସି ଦାଗ ?

ଗଳାରେ କଳା ଜାଇ ?

ନାଁ, ମୁହଁ ଦେଖି ପାରିବେ ନାହିଁ ।

ସେ କ'ଣ କହିଥିଲେ ? ମୁଁ ଦେଖିବି ? ନୀଳ ସାର୍ଟ, ଆଙ୍ଗୁଳି ଓ ତାର ମୁଣ୍ଡବାଳକୁ ଦେଖିବା ପରେ କ'ଣ ମନରେ ସନ୍ଦେହ ଥିଲା ସେ ବ୍ରତୀ ନା ଆଉ କେହି । କେଉଁଠି ଯେପରି ଯୁକ୍ତି, ବୁଦ୍ଧି, ସ୍ୱଚକ୍ଷୁରେ ଦେଖା ସମସ୍ତ କଥାକୁ ପରାସ୍ତ କରି ମନ ଭିତରୁ ସନ୍ଦେହ ଉଙ୍କି ମାରିଥିଲା ନାଁ ମୁହଁ ଦେଖିଲେ ଜଣାଯିବ ଏ ତ ବ୍ରତୀ ନୁହେଁ ।

ସେଥି ପାଇଁ ହୁଏତ ସୁଜାତା କହିଥିଲେ.....

ଡମଟି ତାଙ୍କୁ ଅସୀମ କରୁଣା କଲାପରି କହିଥିଲା-

ମା, କ'ଣ ଦେଖିବେ ? ମୁହଁ କ'ଣ ଆଉ କିଛି ଅଛି ? ସେତେବେଳେ ସୁଜାତା କ'ଣ କହିଥିଲେ ? ଅନ୍ୟ ଚାରୋଟି ଶବ ପଡି ରହିଛି । କିଏ ସବୁ ଯେମିତି ଆକୁଳ ହୋଇ

କାନ୍ଦୁଛନ୍ତି, କିଏ ଯେମିତି ଭୂଇଁରେ ମୁଣ୍ଡ ପିଟୁଛନ୍ତି । କାହାରି ମୁହଁ ମନେ ପଡୁନି । ସବୁ କେମିତି ଧୂଆଁଳିଆ, ତଥାପି କିଛି ସ୍ମୃତି ଯେପରି ହୀରାର ଛୁରୀ ଭଳି ଉଜ୍ଜ୍ୱଳ, କଠିନ ଓ ସ୍ୱୟଂପ୍ରଭ ।

ତା'ର ଛାତିରେ, ପେଟ୍‌ରେ ଓ ଗଳାରେ ତିନୋଟି ଗୁଳିର ଦାଗଥିଲା । ନୀଳ ଗର୍ତ୍ତ । ଖୁବ୍ ପାଖରୁ ଗୁଳି କରାଯାଇଥିଲା । ଚମଡ଼ା ନୀଳ ପଡିଯାଇଛି । 'କର୍ଡାଇଟ୍' ଦ୍ୱାରା ପୋଡି ଯାଇଥିବା ଦେହ । ବାଦାମୀ ରଙ୍ଗର ରକ୍ତ । ଗୁଳିଦାଗର ଚାରିପାଖରେ କର୍ଡାଇଟ୍ ଦ୍ୱାରା ଗୋଲ୍ ଗୋଲ୍ ବୃତ୍ତ, ଚକ୍ରାକାର ହୋଇ ଫାଟିଯାଇଥିବା ଚମଡ଼ା । ଗଳା, ପେଟ ଓ ଛାତିରେ ତିନୋଟି ଗୁଳିର ଦାଗ ।

ବ୍ରତୀର ମୁହଁ, ବ୍ରତୀର ମୁହଁ-ସୁଜାତା ଜୋର୍ କରି ଦୁଇ ହାତରେ ଚାଦରଟି ଟାଣି ଆଣି ଦେଖନ୍ତି ବ୍ରତୀର ମୁହଁ । ଶାଣିତ, ଓଜନିଆ ଅସ୍ତ୍ର ଦ୍ୱାରା ଛେଚି ଛେଚି ମେଞ୍ଚା କରାଯାଇଥିବା ବ୍ରତୀର ମୁହଁ, ପଛ ପଟୁ ତୁଳୀର ଅସ୍ଫୁଟ ଆର୍ତ୍ତନାଦ । ସେଇ ମୁହଁକୁ ଝୁଙ୍କିପଡ଼ି ସୁଜାତା ଦେଖନ୍ତି । ବ୍ରତୀ, ବ୍ରତୀ, ବୋଲି ଡାକି ଆଉଁସି ଦେବା ପାଇଁ ମଧ୍ୟ ତା' ମୁହଁରେ ଏତେ ଟିକେ ବି ଜାଗା ନଥିଲା- ମୁହଁ ବୋଲି ପ୍ରାୟ କିଛି ନଥିଲା । ଖାଲି ଛେଚି ହୋଇଥିବା ମାଂସ ମେଞ୍ଚାଏ । ତା'ପରେ ସୁଜାତା ତା' ମୁହଁକୁ ନିଜେ ଢ଼ାଙ୍କି ଦେଇଥିଲେ । ପଛକୁ ଫେରିଥିଲେ ସୁଜାତା । ତା'ପରେ ଅନ୍ଧ ଭଳି ତୁଳୀକୁ ଜାବୁଡି ଧରିଥିଲେ ।

ବ୍ରତୀର ବାପା ଯେ ଫଟୋଟାକୁ କାଢ଼ି ଦେବା ପାଇଁ କହିଛନ୍ତି, ଏ କଥା ତାଙ୍କର ବ୍ୟାଙ୍କ୍ ଯିବା ସମୟରେ ହିଁ ମନେ ପଡ଼ିଥିଲା; ସେହି ପ୍ରଥମ ଦିନ ବ୍ୟାଙ୍କ୍ ଯିବା ସମୟରେ ।

ବ୍ୟାଙ୍କରେ ସମସ୍ତେ ତାଙ୍କୁ ଅଦ୍ଭୁତ ଦୃଷ୍ଟିରେ ଅନାଇଁଥିଲେ । ସମସ୍ତେ କଥାବାର୍ତ୍ତା କରୁଥିଲେ, ହଠାତ୍ ଚୁପ୍‌ଚାପ ହୋଇଗଲେ । ଏଜେଣ୍ଟ ଲୁଥ୍ରା ଆଗେଇ ଆସି କହିଥିଲେ ।

- ମାଡାମ, ଆପଣଙ୍କ ଦୁଃଖରେ ସମବେଦନା ଜଣାଇବାକୁ ଭାଷା ନାହିଁ । ସୁଜାତା ମୁହଁ ଉପରକୁ ନ ଉଠାଇ କହିଲେ, ଧନ୍ୟବାଦ ।

- ମେମ୍ ସାବ୍ ।

ପାଣି ଗ୍ଲାସ୍‌ଟେ ବଢ଼େଇ ଦେଇଥିଲା ଭିଖନ । ଅଫିସ୍ ଆସି ପାଣି ଗ୍ଲାସେ ପିଇବା ସୁଜାତାଙ୍କର ପୁରୁଣା ଅଭ୍ୟାସ ।

- ମେମ୍ ସାବ୍ ! ଭିଖନ ଅତି ଧୀର ଗଳାରେ ଡାକିଥିଲା । ସୁଜାତା ତା ଆଖିରେ ବେଦନା ଓ ମମତାକୁ ସେ ଦିନ ଦେଖିପାରିଥିଲେ । ଭିଖନ ଯେମିତି ତାଙ୍କୁ ଆଖିରେ ବେଦନା ଜଣାଇ ଆଶ୍ୱାସନା ଦେଉଥିଲା । ସେ ବି ଦିନେ ଭିଖନ ଦୁଃଖରେ ସମବେଦନା ଜଣାଇ ତାକୁ ଆଶ୍ୱାସନା ଦେଇଥିଲେ, ଯେଉଁଦିନ ଭିଖନର ଅସୁସ୍ଥ ପୁଅର ମୃତ୍ୟୁ ଖବର ବ୍ୟାଙ୍କ୍‌ରେ ଆସି ପହଞ୍ଚିଥିଲା, ସେହିଦିନ ।

ଭିଖନର ଆଖିରୁ ଆଖି ଫେରାଇ ନେଇଥିଲେ ସୁଜାତା । ଏହି ମୁହୂର୍ତ୍ତରେ ସେ ତା'ର

ସହାନୁଭୂତି ନେଇପାରୁ ନାହାଁନ୍ତି । ଭିଖନ ତୁ  ମତେ କ୍ଷମା କରିଦେ । ବ୍ରତୀର ମୃତ୍ୟୁ ତୋ ପୁଅର ମୃତ୍ୟୁ ପରି ନୁହେଁରେ, ତୋ ପୁଅର ମୃତ୍ୟୁ ଏଭଳି ଯେ ତୁ ତଳିଆ କର୍ମଚାରୀ ହେଲେ ମଧ୍ୟ ତୋତେ କୁଣ୍ଢେଇ ଧରି  ଆଶ୍ୱାସନା ଦେଇ ହୁଏ ।

ବ୍ରତୀର ମୃତ୍ୟୁ କ'ଣ ସାଧାରଣ ନା ସ୍ୱାଭାବିକ ? ବ୍ରତୀର ମୃତ୍ୟୁ ଆଗରୁ ଅନେକ ପ୍ରଶ୍ନ, ପରେ ମଧ୍ୟ ଅନେକ ପ୍ରଶ୍ନ । ଅନେକ ପ୍ରଶ୍ନବାଚୀ । ଯେମିତି ଅସରନ୍ତି ପ୍ରଶ୍ନବାଚୀର ଏକ ଶୋଭାଯାତ୍ରା; ତା'ପରେ ସମସ୍ତ ପ୍ରଶ୍ନ ଅମୀମାଂସିତ ହୋଇ ରହିଯାଇଛି । ଗୋଟିଏ ପ୍ରଶ୍ନର ଉତ୍ତର ନଥିଲେ ମଧ୍ୟ ବ୍ରତୀ ଚାଟାର୍ଜୀର ଫାଇଲ୍‌କୁ ହଠାତ୍ ବନ୍ଦ କରି ଦିଆଯାଇଛି ।

ଭିଖନ, ତୁ ମତେ କ୍ଷମା କରିଦେ ।

ସାରାଦିନ ଯନ୍ତ୍ରଚାଳିତ ପରି କାମ କରିଥିଲେ ସୁଜାତା । ସନ୍ଧ୍ୟାବେଳେ ବ୍ରତୀର ବାପା ଘରକୁ ଫେରିବା ପରେ ତାଙ୍କୁ ସୁଜାତା ପଚାରିଥିଲେ- ତୁମେ ବ୍ରତୀର ଫଟୋ ତିନିତାଲାକୁ ନେଇ ଯିବାକୁ କହିଛ ?

- ହଁ ।

- ବ୍ରତୀର ଜୋତା ?

- ହଁ ।

- କାହିଁକି ?

- କାହିଁକି କ'ଣ ? ଦିବ୍ୟନାଥ ମୁଣ୍ଡ ହଲାଇଲେ । ବ୍ରତୀର ବ୍ୟବହୃତ ଜିନିଷପତ୍ର କାହିଁକି ଯେ କାଢ଼ିନେବା ଦରକାର, କାହିଁକି ଯେ ବ୍ରତୀର ଅସ୍ତିତ୍ୱ, ସ୍ମୃତି ଚିହ୍ନ ପୋଛି ଦେବା ଦରକାର ତା ଯଦି ସୁଜାତା ନ ବୁଝନ୍ତି, ତାଙ୍କୁ ବୁଝାଇବ କିଏ ?

ଦିବ୍ୟନାଥ ନୀରବ ରହିଥିଲେ ।

- ତିନି ମହଲାରେ କ'ଣ ଚାବି ପଡିଛି ?

- ହଁ ।

- ଚାବି କାହା ପାଖରେ ଅଛି ?

- ମୋ ପାଖରେ ଅଛି ।

- ଦିଅ ।

ଚାବି ନେଇ ତିନିତାଲାକୁ ଉଠିଥିଲା ସୁଜାତା । ଏଇ ତିନିତାଲାରେ ବ୍ରତୀ ଶୋଉଥିଲା । ଆଠ ବର୍ଷ ବୟସରୁ । ପ୍ରଥମେ ପ୍ରଥମେ ଏକା ଶୋଇବାକୁ ରାଜି ହେଉ ନଥିଲା । ଏକା ଶୋଇବାକୁ ତାକୁ ଡର ଲାଗେ । ଠିକ୍ ଅଛି, ହେମ ସେ ଘରେ ଶୋଉ । ସୁଜାତା କହିଥିଲେ ।

କ୍ୟୋତି ବେଳକୁ ସୁଜାତାଙ୍କର ଏ ପ୍ରକାର ଦୁର୍ବଳତା ନଥିଲା କିମ୍ବା ନୀପା ଓ ତୁଲୀ ବେଳକୁ ମଧ୍ୟ ନୁହେଁ । ସେଥିପାଇଁ ଦିବ୍ୟନାଥ ରାଗିଯାଇଥିଲେ ତାଙ୍କର ଏ କଥାରେ । ତାଙ୍କ କଥାର ଉତ୍ତରରେ ସୁଜାତା କହିଥିଲେ ସେମାନଙ୍କ ବେଳକୁ ତୁମର ଆପତ୍ତି ଥିଲା । କାହିଁକି ନା ସେମାନଙ୍କୁ ଡର ମାଡ଼ିଥିଲେ ମଧ୍ୟ ଦିବ୍ୟନାଥଙ୍କ କଥା ଯେ ଅନ୍ୟଥା ହେବ ନାହିଁ ତା' ସୁଜାତା ଜାଣିଥିଲେ । ବ୍ରତୀ ଡରୁଥିଲା, ଖୁବ୍ ଡରୁଥିଲା । ଅତି ମାତ୍ରାରେ ଭାବପ୍ରବଣ ଶିଶୁ ଯେମିତି ଡରିଥାଏ । ରାତିରେ 'ରାମ ନାମ ସତ୍ୟ ହୈ ' ଶୁଣିଲେ ଡରୁଥିଲା । ଦିନରେ ରାସ୍ତାଘାଟରେ ବିଭିନ୍ନ ଖେଳ ଦେଖାଉଥିବା ଲୋକ ଡକାୟତ ବେଶସାଜି ଆସି ପାଟି କଲେ ବି ସେ ଡରୁଥିଲା । ତା'ପରେ ତାର ସବୁ ଡ଼ର ଭୟ ହଠାତ୍ ଦିନେ ଛାଡିଯାଇଥିଲା ।

ବର୍ତ୍ତମାନ ବ୍ରତୀ, ସମସ୍ତ ଭୟ ଓ ନିର୍ଭୟର ଊର୍ଦ୍ଧ୍ୱରେ ।

ପିଲାବେଳୁ ମୃତ୍ୟୁର କବିତା ବଡ଼ ପ୍ରିୟ ଥିଲା ବ୍ରତୀର । ସ୍ୱପ୍ନରେ ସୁଜାତା, ସାତବର୍ଷର ଶିଶୁ ବ୍ରତୀ ଗୋଡ଼ ଝୁଲେଇ ଝର୍କା ପାଖରେ ବସି କବିତା ପଢ଼ିବାର ଦେଖନ୍ତି । ସ୍ୱପ୍ନରେ ସୁଜାତା ଯେତେବେଳେ ବ୍ରତୀକୁ ଦେଖନ୍ତି ସେତେବେଳେ ସେ ଦୁଇ ପ୍ରକାର ଚେତନାର ମନରେ ରୁହନ୍ତି । ଗୋଟିଏ ମନ କହେ ଏ ତ ସ୍ୱପ୍ନ । ବ୍ରତୀ ନାହିଁ । ଏ କେବଳ ସ୍ୱପ୍ନ । ଅନ୍ୟ ମନଟି କହେ ଏହା ସ୍ୱପ୍ନ ନୁହେଁ । ସତ୍ୟ । ସୁଜାତାଙ୍କ ସ୍ୱପ୍ନରେ ସେହି ବ୍ରତୀ, ଝର୍କାରେ ଗୋଡ଼ ଲମ୍ବାଇ ବସିଥିବା ବ୍ରତୀ କବିତା ପଢ଼େ । ସୁଜାତା ବ୍ରତୀର ବିଛଣାରେ ବସି ଶୁଣନ୍ତି । ତା' ବିଛଣାର ଚାଦରକୁ ଟାଣି ସଜାଡ଼ନ୍ତି । ତା'ର ତକିଆକୁ ଠିକ୍ କରିଦିଅନ୍ତି । କେତେବେଳେ ବ୍ରତୀ ପଢ଼େ । ''ସବୁଠାରୁ ଯେ ଡରୁଆ ପିଲା ଥିଲା- ଖୋଲିଲା ସିଏ ଅନ୍ଧାର ଘର ତାଲା ।''

କେତେବେଳେ ଅବା ସ୍ୱପ୍ନରେ ସୁଜାତା ଦେଖନ୍ତି ବ୍ରତୀ ହାତରେ 'ଶିଶୁ' ବହି ଧରି ଘରେ ବୁଲି ବୁଲି ପଢୁଛି ।

'ଅନ୍ଧାର ରାତିରେ ଚାଲିଗଲୁ ତୁହି,
ଅନ୍ଧାରେ ଫେରିଆ ଚୁପ୍ ଚାପ୍ ତୁହି ।
ତୋତେ କେହି ଦେଖି ପାରିବେ ତ ନାହିଁ,
କେବଳ ତାରାକୁ ରହିଥିବେ ଚାହିଁ ।'

ନିଦରେ ବ୍ରତୀ ବୋଲି ଡାକି ଉଠନ୍ତି ସୁଜାତା । ତା'ପରେ ନିଦ ଭାଙ୍ଗିଯାଏ । ସ୍ୱପ୍ନ ଏତେ ସତ ପରି ଲାଗେ ଯେ ସ୍ୱପ୍ନରେ ସୁଜାତା ଚମକି ଉଠି ବ୍ରତୀକୁ ଖୋଜନ୍ତି ।

ତିନିତାଲା ଘରେ କବାଟ ଖୋଲି ଠିଆ ହୋଇଥିଲେ ସୁଜାତା । ବ୍ରତୀର ବିଛଣା ଗୁଡା ହୋଇ ରହିଛି । ସାର୍ଟ ଆଲ୍‌ମାରୀରେ ଟଙ୍ଗା ହୋଇଛି ପୂର୍ବଭଳି । କାନ୍ଥରେ ଟଙ୍ଗା ହୋଇଛି ଫଟୋ । ଥାକରେ ଥାକେ ବହି । ଖାଲି ସୁଟ୍‌କେଶ୍‌ଟା ନାହିଁ । ସେଇଟା ଅଛି ପୋଲିସ୍

ହେପାଜତ୍‌ରେ । ବ୍ରତୀର ଖଟବାଡକୁ ଧରି, ଠିଆ ହୋଇ ସୁଜାତା ଭ୍ରୁକୁଞ୍ଚନ କରି ଭାବିବାକୁ ଚେଷ୍ଟା କରୁଥିଲେ, ଭାବୁଥିଲେ ବ୍ରତୀର ହତ୍ୟା ପଛରେ ତାଙ୍କର କ'ଣ ପରୋକ୍ଷ ଅବଦାନ ଥିଲା ? ସେ ବ୍ରତୀକୁ କିଭଳି ଭାବରେ ଗଢ଼ିଥିଲେ ଯେ ସେ ସେଥିପାଇଁ ଏହି ଦଶକରେ, ଏହି ହେବାକୁ ଯାଉଥିବା ମୁକ୍ତିର ଦଶକରେ ବ୍ରତୀ **ହଜାରେ ଚୌରାଶୀ ନମ୍ବର** ହୋଇଗଲା ? ଅଥଚ ତାଙ୍କୁ କ'ଣ କରିବାକୁ ଥିଲା ଯାହା କି ସେ କରି ପାରି ନଥିଲେ ।

ବ୍ରତୀ ହଜାରେ ଚୌରାଶୀ ହୋଇଗଲା ? କେଉଁଠି ସୁଜାତାଙ୍କର ଭୁଲ ରହିଗଲା ? ସୁଜାତାଙ୍କ ବ୍ୟର୍ଥତାର କାରଣ କ'ଣ ?

ଦିବ୍ୟନାଥ ବ୍ରତୀକୁ ସହ୍ୟ କରିପାରୁନଥିଲେ । କହୁଥିଲେ 'ମାଆର ପୁଅ' । ତୁମେ ତାକୁ ମୋ ସହ ଶତ୍ରୁତା କରିବାକୁ ଶିକ୍ଷା ଦେଇଛ । ସୁଜାତା ଆଶ୍ଚର୍ଯ୍ୟ ହୋଇଯାନ୍ତି । ସେ ବା କାହିଁକି ବ୍ରତୀକୁ ତା'ର ବାପାର ଶତ୍ରୁ ହେବାକୁ କହିବେ ? କାହିଁକି କହିବେ ? ଦିବ୍ୟନାଥ କ'ଣ ସୁଜାତାଙ୍କର ଶତ୍ରୁ ! ଦିବ୍ୟନାଥଙ୍କର ଯେଉଁସବୁ କଥା ଯଥା ସଂଭ୍ରାନ୍ତ ପଣିଆ, ସ୍ୱଚ୍ଛଳପଣିଆ ଓ ସାମାଜିକ ନିରାପତ୍ତା ସୁଜାତା କ'ଣ ସେସବୁ ବିଶ୍ୱାସ କରିନ୍ତିନି ? ସେ ବିଶ୍ୱାସ କରନ୍ତି କି ନା ତା ସେ କେବେ ନିଜକୁ ପ୍ରଶ୍ନ କରିନାହାଁନ୍ତି । ନିଜକୁ ପ୍ରଶ୍ନ କରି ନାହାଁନ୍ତି ଅର୍ଥ ତାଙ୍କର ମନରେ କୌଣସି ପ୍ରଶ୍ନ ଉଠିନଥିଲା । ସୁଜାତା ବଡ଼ ଘରର ଅତ୍ୟନ୍ତ ରକ୍ଷଣଶୀଳ ପରିବାରର ଝିଅ । 'ଲୋରେଟ୍'ରେ ପଢ଼ିବା, ବି.ଏ.ପାସ୍ କରିବା ଏ ସମସ୍ତ କେବଳ ବାହାଘର ପାଇଁ ଦରକାର ଥିଲା । ପାତ୍ରର ସ୍ୱଚ୍ଛଳ ଅବସ୍ଥା ନଥିବା ଜାଣି ମଧ୍ୟ ସମ୍ଭ୍ରାନ୍ତବଂଶୀୟ ଦିବ୍ୟନାଥଙ୍କ ସହିତ ତାଙ୍କୁ ବାହା ଦିଆଯାଇଥିଲା । ଦିବ୍ୟନାଥ ଯେ ବହୁତ ଉନ୍ନତି କରିବେ ଏ ବିଷୟରେ ସୁଜାତାଙ୍କର ବାପା ନିଃସନ୍ଦେହ ଥିଲେ ।

ଏହି ଘର, ପରିବାରର ସ୍ୱଚ୍ଛଳତା, ସାମାଜିକ ନିରାପତ୍ତା ଏ ସବୁକୁ ସୁଜାତା ମଧ୍ୟ ବିଶ୍ୱାସ କରନ୍ତି । ଦିବ୍ୟନାଥଙ୍କର ଅଭିଯୋଗ ତେବେ ମିଥ୍ୟା ।

ଯଦି ଦିବ୍ୟନାଥଙ୍କ ଅଭିଯୋଗ ମିଥ୍ୟା ହୁଏ, ତେବେ ସୁଜାତା ବ୍ରତୀକୁ ଦିବ୍ୟନାଥଙ୍କ ସହ ଶତ୍ରୁତା କରିବା ପାଇଁ କହିନାହାନ୍ତି-ଏହା ପ୍ରମାଣିତ । ଏକଥା ଯଥେଷ୍ଟ ପ୍ରମାଣଯୋଗ୍ୟ ନୁହେଁ ଯେ ବ୍ରତୀ ତା'ର ବାପାଙ୍କୁ ଶତ୍ରୁ ବୋଲି ଭାବିଛି । ବ୍ରତୀ ଯେ ଦିବ୍ୟନାଥଙ୍କୁ ସହ୍ୟ କରିପାରେ ନାହିଁ, ଏ କଥା ସୁଜାତା ଜାଣିଥିଲେ । ଭଲ ଭାବେ ଜାଣିଥିଲେ ।

- କ'ଣ ପାଇଁ ବ୍ରତୀ ?

- ଦିବ୍ୟନାଥ ଚାଟାର୍ଜୀ ଜଣେ ବ୍ୟକ୍ତି ଭାବରେ ମୋର ଶତ୍ରୁ ନୁହଁନ୍ତି ।

- ତେବେ ?

ସେ ଯେଉଁ ବିଷୟ ଓ ମୂଲ୍ୟବୋଧ ପ୍ରଭୃତିରେ ବିଶ୍ୱାସ କରନ୍ତି, ସେସବୁକୁ ବହୁ ବ୍ୟକ୍ତି ବିଶ୍ୱାସ କରନ୍ତି । ଏହି ମୂଲ୍ୟବୋଧକୁ ନିଜ ଭିତରେ ପୋଷଣ କରୁଥିବା ଶ୍ରେଣୀ ହିଁ

ମୋର ଶତ୍ରୁ ଏବଂ ବାପା ଜଣେ ସେହି ଶ୍ରେଣୀର ବ୍ୟକ୍ତି ।

- ତୁ ଯେ କ'ଣ କହୁଛୁ ବ୍ରତୀ , ମୁଁ ବୁଝିପାରୁନି ।

- ବୁଝିବା ପାଇଁ ଚେଷ୍ଟା କାହିଁକି କରୁଛ ମା ? ଏ ବୋତାମଟା ଲଗାଅ ନା ।

- ବ୍ରତୀ, ତୁ କେମିତି ଅନ୍ୟ ଧରଣର ହୋଇଯାଉଛୁ ।

- କେମିତି ?

- ବଦଳି ଯାଉଛୁ ।

- ବଦଳି ଯିବିନି ?

- ଦିନସାରା କୁଆଡେ ବୁଲୁଛୁ ?

- ଆଡ୍‌ଡ଼ା ମାରୁଛି ।

- କାହା ସାଙ୍ଗରେ ?

- ବନ୍ଧୁମାନଙ୍କ ସହିତ ।

- ତୋର ସାର୍ଟ ନେ । ବୋତାମ ସିଲେଇ କରିବା ସମୟରେ ମା' ସାଙ୍ଗରେ ଦି'ପଦ କଥା ହେବା ପାଇଁ ଯେମିତି ସମୟ ମିଳୁଥିଲା ।

ବ୍ରତୀ କିଛି କଥାବାର୍ତ୍ତା କରିନଥିଲା । ଆଖି ଉପରକୁ ଉଠାଇ ଖାଲି ହସିଥିଲା । ତା' ହସ ଆଉ କଥା କହିବା ଢ଼ଙ୍ଗରେ କ୍ରମାଗତ ଭାବରେ ସହିଷ୍ଣୁତା ଓ ଧୈର୍ଯ୍ୟ ସହିତ ଆଉ ଏକ ଭାବ ଆସିଯାଉଥିଲା । ସୁଜାତା କଥା କହିବା ଆଗରୁ ସେ ଯେପରି ଜାଣିଥିଲା ଯେ ସୁଜାତା ତା'ର କଥା କିଛି ବୁଝିପାରିବେ ନାହିଁ । ବ୍ରତୀ ଏପରି ଭାବରେ କଥାବାର୍ତ୍ତା କରୁଥିଲା ସତେ ଯେପରି ସେ ବାପା, ସୁଜାତା ହେଉଛନ୍ତି ତା'ର କୁନି ଝିଅ ।

ଛୋଟ ପିଲାଙ୍କୁ ଭୁଲାଇଲା ଭଳି ବ୍ରତୀ ବୁଝେଇ ଦିଏ । ସୁଜାତା ବୁଝି ପାରୁଥିଲେ ବ୍ରତୀ ଯେପରି କ୍ରମଶଃ ତାଙ୍କ ପାଖରେ ଅଜଣା , ଅଚିହ୍ନା ହୋଇଯାଉଛି । ସେତେବେଳେ ତାଙ୍କ ମନ ଗଭୀର ଦୁଃଖରେ ଭରିଯାଏ । କାହିଁକି, ତାଙ୍କ ମନରେ ଭୟ ବା ଆଶଙ୍କା କେବେ ହୋଇନି ?

ଗୋଟିଏ ଘରେ ରହି ମା' ପାଖରୁ ପିଲା ଯଦି କ୍ରମେ ଅଚିହ୍ନା, ଅଜଣା ହୋଇଯାଏ, ସମ୍ପର୍କ ଛିନ୍ନ ହୋଇଯାଏ, ଦୁର୍ବୋଧ ହୋଇପଡେ, ତେବେ ଭୟଙ୍କର ବିପଦ ଯେ ଦିନେ ନା ଦିନେ ମାଡ଼ିଆସିବ ଏକଥା କାହିଁକି ସେ ଚିନ୍ତା କରି ପାରି ନଥିଲେ ?

ବ୍ରତୀର ରୁମ୍‌ରେ ଠିଆ ହୋଇ ଭ୍ରୂକୁଞ୍ଚନ କରି ଏସବୁ କଥା ଭାବୁଥିଲେ ସୁଜାତା । ଭାବୁଥିଲେ ବ୍ରତୀର ମୃତ୍ୟୁ, ସୁଜାତାଙ୍କର ବଡ଼ଭାଇଙ୍କ ଦୁରାରୋଗ୍ୟ ବ୍ୟାଧିରେ ମୃତ୍ୟୁ ଭଳି ଯଦି ହୋଇଥାଆନ୍ତା; ତେବେ ମୃତ୍ୟୁ ପରେ ମନରେ ସ୍ୱତଃ ଅନେକ ପ୍ରଶ୍ନ ଉଠି ଥାଆନ୍ତା ।

ସେ ପ୍ରଶ୍ନ ଗୁଡିକ ଏହିଭଳି ହୋଇଥାଆନ୍ତା ଯେ ଚିକିତ୍ସା କରିବାରେ ଡାକ୍ତରଙ୍କ କ'ଣ ତ୍ରୁଟି ରହିଗଲା ନା ପରିବାରର ଲୋକମାନେ ଅବହେଳା ପ୍ରଦର୍ଶନ କଲେ ? ଏ ଡାକ୍ତରଙ୍କୁ ନ ଦେଖାଇ ଅନ୍ୟ ଡାକ୍ତରଙ୍କୁ ଦେଖାଇଥିଲେ କ'ଣ ହୋଇଥାଆନ୍ତା । ଏ ଔଷଧ ନ ଦେଇ ଅନ୍ୟ ଔଷଧ ଦେଇଥିଲେ କ'ଣ ଭଲ ହୋଇଥାଆନ୍ତା ଇତ୍ୟାଦି ଇତ୍ୟାଦି । ବ୍ୟାଧିଜନିତ ମୃତ୍ୟୁର ପରବର୍ତ୍ତୀ ପ୍ରଶ୍ନମାନ ଏହିଭଳି ହିଁ ହୋଇଥାଏ ।

ବ୍ରତୀର ମୃତ୍ୟୁ ଯଦି ଦୁର୍ଘଟଣାଜନିତ ହୋଇଥାଆନ୍ତା ତେବେ ପ୍ରଶ୍ନ ଉଠିଥାଆନ୍ତା ଯେ ଯେଉଁ ଧରଣର ଦୁର୍ଘଟଣା ଘଟିଲା ତା'କୁ ବ୍ରତୀ ଏଡ଼େଇ ପାରିଥାଆନ୍ତା କି ନାହିଁ ? ତା ପରେ ପ୍ରଶ୍ନ ଉଠିଥାନ୍ତା-ଯେଉଁ ପରିସ୍ଥିତିରେ ଦୁର୍ଘଟଣାଟା ଘଟିଲା, ତାହା ନ ହେବା ପାଇଁ ଅନ୍ୟ କଣ କରାଯାଇପାରିଥା'ନ୍ତା ? ଦିବ୍ୟନାଥଙ୍କର ପରି ସୁଜାତା ଯଦି ଜାତକରେ ବିଶ୍ୱାସୀ ହୋଇଥାଆନ୍ତେ ତେବେ ଜାତକରେ ବ୍ରତୀର ଦୁର୍ଘଟଣାଜନିତ ମୃତ୍ୟୁର ସୂଚନା ଥିଲା କି ନାହିଁ; ଯଦି ଥିଲା ତେବେ ପ୍ରତିକାର ପାଇଁ କିଛି ବ୍ୟବସ୍ଥା ରହିଥିଲା କି ନାହିଁ, ତା ସେ ଜାଣିପାରି ଥାଆନ୍ତେ । ଯଦି କୌଣସି ଦଣ୍ଡନୀୟ ଅପରାଧରେ ଜଡ଼ିତ ହୋଇ ତା'ର ମୃତ୍ୟୁ ହୋଇଥାଆନ୍ତା ତେବେ ପ୍ରଶ୍ନ ଉଠିଥା'ନ୍ତା-ଏ ପରିବାରର ପିଲା ହୋଇ, କାହା ଦୋଷରୁ, କେଉଁ କୁସଙ୍ଗରେ ପଡି ବ୍ରତୀ ଅପରାଧୀ ହୋଇଗଲା । କ'ଣ ପ୍ରତିକାର ପୂର୍ବରୁ କରିଥିଲେ ବ୍ରତୀକୁ ଏପରି ଅଘଟଣରୁ ରକ୍ଷା କରାଯାଇ ପାରିଥାନ୍ତା ?

ବ୍ରତୀ ଏସବୁ କୌଣସି ପର୍ଯ୍ୟାୟଭୁକ୍ତ ନଥିଲା । ଅପରାଧ ଏତିକି ଯେ ସେ ଏହି ସମାଜ ଓ ସାମାଜିକ ବ୍ୟବସ୍ଥା ଉପରେ ବିଶ୍ୱାସ ହରାଇଥିଲା । ବ୍ରତୀର ମନେ ହୋଇଥିଲା ଯେଉଁ ପଥ ମାଧ୍ୟମରେ ସମାଜ ଓ ରାଷ୍ଟ୍ର ପରିଚାଳିତ, ସେ ପଥ ମୁକ୍ତିର ପଥ ନୁହେଁ । ଅପରାଧ ମଧ୍ୟରେ ବ୍ରତୀ କେବଳ ଯେ ସ୍ଲୋଗାନ ଲେଖିଛି ତା' ନୁହେଁ, ସେ ସ୍ଲୋଗାନରେ ବିଶ୍ୱାସ କରୁଥିଲା । ଦିବ୍ୟନାଥ କି ଜ୍ୟୋତି କେହି ବ୍ରତୀର ମୁଖାଗ୍ନି ଦେଇ ନଥିଲେ । ବ୍ରତୀ ଓ ତାର ଗୋଷ୍ଠୀ ଏଭଳି ସମାଜ ବିରୋଧି ଯେ ସେମାନଙ୍କ ଶବ କାଁଟାପୁକୁରରେ ସେହିଭଳି ପଡ଼ିଥାଏ । ରାତିହେଲେ ପୋଲିସ୍ ହେପାଜତରେ ଗାଡ଼ି ବୋଝେଇ ଶବ ଶ୍ମଶାନକୁ ଆସେ । ତା'ପରେ ଶବ ଗୁଡିକ ଜଳେଇ ଦିଆଯାଏ ।

ଅନ୍ଧାର ରାତିରେ ଶବ ଗୁଡାକ ଫୁରୁକୁଟିଆ ଗନ୍ଧକରି ଜଳୁଥାଏ । ଯେଉଁମାନେ ଶୁଦ୍ଧିକ୍ରିୟାରେ ବିଶ୍ୱାସୀ, ସେମାନେ ଶାସ୍ତ୍ରର ନିୟମାନୁଯାୟୀ ଦିନବେଳା ଶ୍ରାଦ୍ଧ କରିପାରନ୍ତି ନାହିଁ । କାନ୍ଦି କାନ୍ଦି ଫୁଲିଯାଇଥିବା ଆଖି ନେଇ ସେମାନଙ୍କୁ ବସି ରହିବାକୁ ହୁଏ । ତା'ପରେ ସେମାନେ ରାତିରେ ଶ୍ରାଦ୍ଧ କରୁଥିବା କୌଣସି ବ୍ରାହ୍ମଣର ଦ୍ୱାରସ୍ଥ ହୁଅନ୍ତି ।

ଶବର ମୁଣ୍ଡ ପିଛା କିଛି ମୋଟା ଟଙ୍କା ନେଇ ବ୍ରାହ୍ମଣ ରାତି ଭିତରେ ଚଟାପଟ ଶ୍ରାଦ୍ଧ କାମଟା ସାରିଦିଏ । ବ୍ରତୀ ସ୍ଲୋଗାନ ଲେଖୁଥିଲା । ପୋଲିସ୍ ତା' ରୁମ୍ ଖାନତଲାସ କଲାବେଳେ

ସୁଜାତା ସେ ସ୍ଲୋଗାନ ଗୁଡିକୁ ଦେଖିଥିଲେ । ସେଗୁଡିକ ବ୍ରତୀ ନିଜେ ଲେଖିଥିଲା ।

ଜେଲ୍ ହିଁ ଆମର ବିଶ୍ୱବିଦ୍ୟାଳୟ । ବନ୍ଧୁକର ନଳୀ ଦେଇ...

ଏହି ଦଶକ, ମୁକ୍ତିର ଦଶକ ହେବାକୁ ଯାଉଛି । ଘୃଣାକରନ୍ତୁ । ଚିହ୍ନିତ କରନ୍ତୁ । ଧ୍ୱଂସ କରନ୍ତୁ ମଧ୍ୟମ ପନ୍ଥୀମାନଙ୍କୁ । ଆଜି 'ୟେନାନ' (ଚୀନର ଅଂଶ ବିଶେଷ)ର ପରିସ୍ଥିତି ଏଠାରେ ସୃଷ୍ଟି ହୋଇଛି ।

ଶୁଣିଥିଲେ, ବ୍ରତୀ ଓ ତାର ବନ୍ଧୁମାନେ ସ୍ଲୋଗାନ ଲେଖନ୍ତି ! ତା'ପରେ ନିଶୁନ ରାତିର ଅନ୍ଧକାରରେ କାନ୍ଥରେ ସ୍ଲୋଗାନ ଲେଖାଯାଏ । ନହେଲେ ଦିନ ଏଗାରଟା ବେଳେ, ପୋଲିସ୍ ଯେତେବେଳେ ବସ୍ତି ଘେରାଉ କରିଥାଏ, ରାସ୍ତା ଉପରୁ ତପନର ଲାଲରକ୍ତ ସେ ପର୍ଯ୍ୟନ୍ତ ଶୁଖି ନଥାଏ; ସେତେବେଳେ ବେପରୁଆ କାଲୁ ଲାଲ ରଙ୍ଗର ତୂଳୀ ନେଇ, କୌଣସି ଧନୀ ଲୋକର ପରିଷ୍କାର କାନ୍ଥରେ ଲେଖେ- 'ଲାଲ୍ ବାଂଲାର ଲାଲ କମ୍ରେଡ, ଲାଲ ତପନର ଲାଲ୍ ରକ୍ତରେ..... ବଜାର ପୋଡି ମା....'

ଲେଖୁ ଲେଖୁ କାଲୁ ଗୁଳିର ଶିକାର ହେବାରୁ ସ୍ଲୋଗାନ୍‌ଟି ଅସଂପୂର୍ଣ୍ଣ ରହିଯାଏ । ବ୍ରତୀ ପ୍ରଭୃତି ଏକ ନୂଆ ଗୋଷ୍ଠୀର ପିଲା । ସ୍ଲୋଗାନ ଲେଖିଲେ ଯେ ବୁଲେଟ୍‌ର ଶିକାର ହେବେ ତା ଜାଣି ମଧ୍ୟ ସେମାନେ ସ୍ଲୋଗାନ ଲେଖନ୍ତି । କାଁଟାପୁକୁର ଯିବା ପାଇଁ ସେମାନଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ଚାଲେ ।

ସୁଜାତା ବ୍ରତୀକୁ କୌଣସି ଶ୍ରେଣୀର ଅପରାଧୀ ଭାବେ କେବେ ଗଣ୍ୟ କରିପାରିବେ ନାହିଁ ।

ଜ୍ୟୋତି ଓ ଦିବ୍ୟନାଥ କାନ୍ଦି କାନ୍ଦି ସୁଜାତାଙ୍କୁ ବୁଝେଇବାକୁ ଚେଷ୍ଟା କରିଥିଲେ ଯେ ଏ ସମାଜରେ ବଡ଼ ବଡ଼ ଅପରାଧୀ; ଯେଉଁମାନେ ଖାଦ୍ୟପଦାର୍ଥ, ଔଷଧ ଏପରିକି ଶିଶୁ ଖାଦ୍ୟ ପ୍ରଭୃତିରେ ଅପମିଶ୍ରଣ କରନ୍ତି, ସେମାନେ ହତ୍ୟାକାରୀ ହେଲେ ମଧ୍ୟ ବଞ୍ଚି ରହିପାରିବେ । ଏହି ସମାଜରେ ବଡ଼ ବଡ଼ ନେତାମାନେ ଗାଁ ଗହଳିର ନିରୀହ ମଣିଷମାନଙ୍କୁ ପୋଲିସ୍ ଗୁଳି ସାମ୍ନାକୁ ଠେଲି ଦେଇ ପୋଲିସ୍‌ର ପହରା ମଧ୍ୟରେ ନିରାପଦ ସ୍ଥାନରେ ଆଶ୍ରୟ ନେଇ ବଞ୍ଚି ରହିପାରିବେ । କିନ୍ତୁ ବ୍ରତୀ ଯେ ଏମାନଙ୍କଠାରୁ ବଡ ଅପରାଧୀ । କାରଣ ସେ ଏହି ମୁନାଫାଖୋର ବ୍ୟବସାୟୀ ଗୋଷ୍ଠୀ ଓ ସ୍ୱାର୍ଥାନ୍ଧ ନେତା କର୍ତ୍ତୃକ ବ୍ୟବସ୍ଥା ଉପରୁ ଆସ୍ଥା ହରାଇଥିଲା, ବିଶ୍ୱାସ ହରାଇଥିଲା । ଏହି ବିଶ୍ୱାସହୀନତା 'ଯେଉଁ ବାଳକ, କିଶୋର ବା ଯୁବକ ମନରେ ଥରେ ପଶିଯାଏ ସେମାନଙ୍କର ବୟସ ବାର, ଷୋଳ ଅଥବା ବାଇଶ; ଯାହା ହୋଇଥାଉନା କାହିଁକି ତା'ର ଏକମାତ୍ର ଶାସ୍ତି ହେଉଛି ନିଶ୍ଚିତ ମୃତ୍ୟୁ ।

ତା'ର ଏବଂ ସେମାନଙ୍କର ଶାସ୍ତି କେବଳ ମୃତ୍ୟୁ । କାରଣ ଅତ୍ୟନ୍ତ ସୁବିଧାବାଦୀ ମେରୁଦଣ୍ଡହୀନ, ଯୁଆଡ଼େ ପବନ ସେ ଆଡେ ଛତା ଅନୁଯାୟୀ ମତ ପରିବର୍ତ୍ତନ କରୁଥିବା

ଶିଳ୍ପୀ, ସାହିତ୍ୟିକ ଓ ବୁଦ୍ଧିଜୀବୀ ସମାଜଙ୍କୁ ଏମାନେ ବର୍ଜନ କରନ୍ତି ।

ତେଣୁ ସେମାନଙ୍କର ଶାସ୍ତି ହିଁ ମୃତ୍ୟୁ । ସମସ୍ତେ ସେମାନଙ୍କୁ ହତ୍ୟା କରି ପାରନ୍ତି । ସବୁଦଳ ଓ ସବୁ ମତବାଦ ବ୍ୟକ୍ତିଙ୍କର ଏହି ଦଳବିହୀନ ତରୁଣମାନଙ୍କୁ ହତ୍ୟା କରିବାର ନିର୍ବୋଧତା ତଥା ଗଣତାନ୍ତ୍ରିକ ଅଧିକାର ରହିଛି । ଏଥିପାଇଁ ଆଇନ୍ କାନୁନ୍ ,ଅନୁମତି ବା ବିଚାରର କୌଣସି ଆବଶ୍ୟକତା ନାହିଁ ।

ଏକୁଟିଆ ବା ଦଳବଦ୍ଧ ଭାବରେ ଏହି ବିଶ୍ୱାସହରା ତରୁଣମାନଙ୍କୁ ହତ୍ୟା କରାଯାଇପାରେ । ବୁଲେଟ୍, ଛୁରୀ, ଦା, ବର୍ଚ୍ଛା ବା ଭାଲା ଭଳି ଯେ କୌଣସି ଅସ୍ତ୍ର ଦ୍ୱାରା ଯେକୌଣସି ସମୟରେ, ସହରର ଯେକୌଣସି ଅଞ୍ଚଳରେ, ଯେକୌଣସି ଦେଖଣାହାରୀ ବା ଦେଖଣାହାରୀ ଦଳଙ୍କ ସାମ୍ନାରେ ହତ୍ୟା କରାଯାଇପାରେ ।

ଜ୍ୟୋତି ଓ ଦିବ୍ୟନାଥ ଦୁହେଁ ଶୁଆ ପଢ଼ାଇଲା ପରି ସୁଜାତାଙ୍କୁ ଏ କଥା ବୁଝାନ୍ତି । କିନ୍ତୁ ସୁଜାତା ଅସମ୍ମତି ଜଣାଇ ମୁଣ୍ଡ ହଲାଇ ଦିଅନ୍ତି ।

ନା, ବ୍ରତୀର ମୃତ୍ୟୁ ପୂର୍ବର ପ୍ରଶ୍ନ ହେଉଛି ବ୍ରତୀ ବିଶ୍ୱାସହୀନତାକୁ କାହିଁକି ଦୃଢ଼ତାର ସହିତ ବିଶ୍ୱାସ କରିଥିଲା ଏବଂ ତା'ର ମୃତ୍ୟୁ ପରବର୍ତ୍ତୀ ପ୍ରଶ୍ନ ହେଲା ବ୍ରତୀ ଚାଟାର୍ଜୀର ଫାଇଲ୍‌କୁ ବନ୍ଦ କରାଗଲା ସତ, କିନ୍ତୁ ତା'କୁ ହତ୍ୟାକରି ସେ ବିଶ୍ୱାସହୀନତାର ପ୍ରଜ୍ୱଳିତ ବିଶ୍ୱାସକୁ କ'ଣ ଶେଷ କରି ଦିଆଯାଇ ପାରିଲା ? ବ୍ରତୀ ନାହିଁ । ବ୍ରତୀର ବନ୍ଧୁମାନେ ମଧ୍ୟ ନାହାଁନ୍ତି । ତେବେ କ'ଣ ସବୁର ପରିସମାପ୍ତି ଘଟିଲା ।

ପ୍ରଶ୍ନ ହେଲା ତେବେ ବ୍ରତୀର ମୃତ୍ୟୁ କ'ଣ ନିରର୍ଥକ ? ତା'ର ମୃତ୍ୟୁର ଅର୍ଥ କ'ଣ ଏକ ବିରାଟ ନାସ୍ତି ବାଚକ ?

ସବୁ କ'ଣ ଥିଲା ମିଥ୍ୟା ଓ ଅସ୍ତିତ୍ୱହୀନ ? ତାର ବିଶ୍ୱାସ ? ତା'ର ନିର୍ଭୀକତା ? ତା'ର ଦୁର୍ବାର ଆବେଗ ? ନିଶ୍ଚିତ ମୃତ୍ୟୁ ଜାଣି ମଧ୍ୟ ସମୁ, ବିଜିତ, ପାର୍ଥ ଓ ଲାଲଟୁଙ୍କୁ ସାବଧାନ କରିବା ପାଇଁ ନୀଳ ସାର୍ଟଟା ପିନ୍ଧି ଛୋଟ ପିଲାଙ୍କୁ ଭୁଲାଇଲା ପରି ସୁଜାତାଙ୍କୁ ଭୁଲାଇ ଘରୁ ବାହାରି ପଡ଼ିବା, ଯିବା ପୂର୍ବରୁ ହଠାତ୍ ସୁଜାତାଙ୍କୁ ମନପ୍ରାଣ ଦେଇ ଦେଖି ନେବା ଏବଂ ତାଙ୍କର ଆଭିଜାତ୍ୟପୂର୍ଣ୍ଣ ସୁନ୍ଦର ତଥା ପୌଢ଼ ମୁଖମଣ୍ଡଳରେ ବେଦନା ଜର୍ଜରିତ ପ୍ରତି ରେଖାକୁ ତନ୍ନ ତନ୍ନ ଦେଖି ମନରେ ଗଭୀର ଭାବେ ଆଙ୍କି ନେବା ଭଳି ସମସ୍ତ କାର୍ଯ୍ୟ କ'ଣ ମିଥ୍ୟା ?

ସୁଜାତା ମୁଣ୍ଡ ହଲାଇ ବାହାରକୁ ବାହାରି ଆସିଥିଲେ । ଆସିବା ଆଗରୁ ରୁମ୍ ବନ୍ଦ କରିଥିଲେ । ଚାବିଟା ସେଦିନଠାରୁ ସେ ନିଜ ପାଖରେ ରଖିଥିଲେ । ନିଜ ବ୍ୟାଗ୍‌ରେ । ଆଜିକୁ ଦୁଇବର୍ଷ ଧରି ପ୍ରତି ରାତିରେ ତିନିତାଲାକୁ ଉଠିଯା'ନ୍ତି ସୁଜାତା । ବ୍ରତୀର ଘର ଓଳାନ୍ତି, ଧୂଳି ଝାଡ଼ି ପରିଷ୍କାର କରନ୍ତି । ବିଛଣାଟା ଆଉ ଥରେ ସଜାଡ଼ି ଦିଅନ୍ତି । ଆଲ୍‌ନା ତଳେ ଜୋତା

ରଖନ୍ତି । ଜାମାପଟା ଚଉତି ଦିଅନ୍ତି । ତାଙ୍କରି ପରି ହଜାର ହଜାର ସନ୍ତାନହରା ମା'ମାନଙ୍କ ପରି ସମସ୍ତଙ୍କର ଅଗୋଚରରେ ମୃତ ପୁତ୍ରର ପିନ୍ଧା ସାର୍ଟରେ ହାତ ବୁଲାଇ ଦିଅନ୍ତି । ଆଙ୍ଗୁଳି ବୁଲାଇ ପୁଅ ଫଟୋକୁ ଆଉଁସି ଦିଅନ୍ତି । ବ୍ରତୀର ରୁମ୍‌ରେ ବସି ରହନ୍ତି ସୁଜାତା । ମନେ ମନେ ବ୍ରତୀ ସଙ୍ଗେ କଥା ହୁଅନ୍ତି । ଆଖି ବୁଜି ଭାବନ୍ତି ବ୍ରତୀ ତାଙ୍କ ପାଖରେ ଅଛି । ଭାବନ୍ତି, କେତେ ମା' ଯେ ସେମାନଙ୍କ ସନ୍ତାନମାନଙ୍କୁ ଏମିତି ସମସ୍ତଙ୍କ ଅଗୋଚରରେ ଡାକନ୍ତି, ପାଖରେ ପାଇବାକୁ ଆକୁଳ ହୁଅନ୍ତି ?

ବ୍ରତୀ ସହ କଥା କୁହନ୍ତି ସୁଜାତା । କେବେ କେବେ ବ୍ରତୀ କଥାର ଉତ୍ତର ଦିଏ ତ କେବେ ଦିଏନା ।

ଜ୍ୟୋତି ରୁମ୍‌ରେ ଟେଲିଫୋନ୍ ବାଜୁଛି । ସେହି ଟେଲିଫୋନ୍ ଧରିବାକୁ ଯାଇ ସୁଜାତାଙ୍କର ଏତେ କଥା ମନେ ପଡ଼ିଗଲା ।

ସମୁ, ଲାଲ୍‌ଟୁ, ବିଜିତ ଓ ପାର୍ଥଙ୍କ ଘରେ ଟେଲିଫୋନ୍ ନାହିଁ । ଫୋନ୍ ଶବ୍ଦରେ ସେମାନଙ୍କର ଘର ଲୋକଙ୍କର ନିଦ ଭାଙ୍ଗିବାର ନାହିଁ । ଆଜି ସକାଳେ ସମୁ ,ବିଜିତ ଓ ପାର୍ଥର ମା'ମାନେ କ'ଣ ସବୁ ଭାବୁଛନ୍ତି ?

ନାଇଲନ୍‌ର ନାଇଟି ପିନ୍ଧି ବିନି ଧୀର ପାଦରେ ଆସି ଦୁଆର ଖୋଲି ଦେଲା । ତା' ମୁହଁରେ ଓ ଆଖିରେ ସ୍ପଷ୍ଟ ବିରକ୍ତିର ଚିହ୍ନ । ଏତେ ଶୀଘ୍ର ନିଦ ଭାଙ୍ଗି ଉଠିବାକୁ ଚାହେଁ ନା ସେ । ତା' ନିଦ ମଧ୍ୟ ଭାଙ୍ଗେନି ।

ନିୟମିତ ନିଦ୍ରା ତଥା ବିଶ୍ରାମ ବିନି ଓ ଜ୍ୟୋତି ଉଭୟଙ୍କର ଦରକାର । ସୁଜାତାଙ୍କର ବଡ଼ ପୁଅ ଓ ବୋହୂ ଗଭୀର ପ୍ରେମାସକ୍ତ । ଅବଶ୍ୟ ସୁମନକୁ ଆଠ ମାସ ହେବା ଦିନରୁ ସେମାନଙ୍କର ଖଟ ଅଲଗା । ତେବେ ବି ସେମାନେ ଅତ୍ୟଧିକ ପ୍ରେମାସକ୍ତ ବୋଲି ସମସ୍ତେ ଜାଣନ୍ତି । ଆଗରୁ ରକ୍ତମାଂସର ସୁଖକୁ ଖୁବ ମହତ୍ତ୍ୱପୂର୍ଣ୍ଣ ବୋଲି ସୁଜାତା ଭାବିଥିଲେ । କିନ୍ତୁ ବିନି ଓ ତାର ସ୍ୱାମୀ ରକ୍ତମାଂସର ସୁଖକୁ ପ୍ରେମ ଠାରୁ ଅଲଗା କରି ଦେଖନ୍ତି ।

ସେମାନଙ୍କ ପ୍ରେମ ଅନ୍ୟ ପ୍ରକାରର । ସେମାନଙ୍କର ବିବାହ ବାର୍ଷିକୀରେ ଖୁବ୍ ଜାକଜମକରେ ପାର୍ଟି ହୁଏ । ଦୁଇ ଜଣ ସାଙ୍ଗ ହୋଇ ବାହାରି ପଡନ୍ତି, ବୁଲିବାକୁ ଯାଆନ୍ତି । ସୁଜାତା ଶୁଣିଛନ୍ତି, କ୍ଲବ ଗଲେ ଜ୍ୟୋତି ଛଡ଼ା ଆଉ କାହା ସାଙ୍ଗେ ସେ ନାଚେନି, ସେଥିପାଇଁ ସୋସାଇଟିରେ ବିନିର ଖୁବ୍ ସୁନାମ । ସୁଜାତା ଫୋନ୍ ଉଠାଇଲେ ।

- କିଏ ?

- ମୁଁ ନନ୍ଦିନୀ !

- ନନ୍ଦିନୀ ?

- ହଁ, ମୁଁ ଫେରି ଆସିଛି ।

- କେବେ ?

- ପରଦିନ !

- ଆପଣଙ୍କ ସଙ୍ଗେ ମୋର ଥରେ ଦେଖା ହେବା ଦରକାର । ମୁଁ ଆପଣଙ୍କ ଘରକୁ ଯାଇ ପାରିବିନି । ଆପଣ କ'ଣ ଆଜି ବ୍ୟାଙ୍କ ଆସିବେ ?

- ଆଜି ମୁଁ ଯିବିନି ନନ୍ଦିନୀ । ଆଜି ମୋର ସାନ ଝିଅ ତୁଲୀର ନିର୍ବନ୍ଧ ।

- ତା'ହେଲେ ?

- ତୁମେ କୁହ, କେଉଁଠିକି ଗଲେ ଦେଖା ହେବ ? ସନ୍ଧ୍ୟାବେଳଟା ଛଡା ଅନ୍ୟ ସମୟରେ ମୁଁ ଯାଇପାରିବି ।

- ଚାରିଟା ବେଳେ ?

- ଯାଇ ପାରିବି । କେଉଁଠିକି ଯିବି କୁହ ?

- ଗୋଟେ ଠିକଣା ଦେଉଛି, ଜାଗାଟା ଆପଣଙ୍କ ଘର ପାଖରୁ ବେଶୀ ଦୂର ନୁହେଁ । ନନ୍ଦିନୀ ଠିକଣା ଦେଲା ।

ସୁଜାତା ଫୋନ୍ ରଖିଲେ । ନନ୍ଦିନୀ ! ବ୍ରତୀ ନନ୍ଦିନୀକୁ ଭଲ ପାଉଥିଲା । କିନ୍ତୁ ନନ୍ଦିନୀକୁ କେବେ ଦେଖି ନାହାଁନ୍ତି ସୁଜାତା ।

ଜ୍ୟୋତି ଆଡ଼କୁ ସେ ଅନେଇଲେ । ଶୋଇଲା ବେଳେ, କେବଳ ଶୋଇବା ସମୟରେ ହିଁ ଜ୍ୟୋତିର ମୁହଁରେ ବ୍ରତୀର ସାଦୃଶ୍ୟ ସେ ଲକ୍ଷ୍ୟ କରିଥାନ୍ତି । ବାରଣ୍ଡାକୁ ବାହାରି ଆସିଲେ ।

ବାରଣ୍ଡାକୁ ବାହାରି ଆସୁଆସୁ ସେ ଶୀତର ପ୍ରକୋପ ଅନୁଭବ କଲେ । ନନ୍ଦିନୀ ଓ ବ୍ରତୀ କ'ଣ ଗୋଟେ ପତ୍ରିକା ପ୍ରକାଶ କରିଥିଲେ । ସେ ଦୁଇଜଣ ଡ୍ରାମାରେ ମଧ୍ୟ ଅଭିନୟ କରିଥିଲେ । ସେତେବେଳେ ସୁଜାତାଙ୍କୁ ହାଡ଼ଫୁଟି ହୋଇଥିଲା । ସେ ଯାଇପାରି ନଥିଲେ । ଘରୁ ମଧ୍ୟ କେହି ଯାଇ ନଥିଲେ । ଖାଲି ହେମ କହିଥିଲା, ଜାଣିଛ ମା' ଛୋଟବାବୁ ଆମର ବହୁତ ପ୍ରଶଂସା ପାଇଲେ, ସମସ୍ତେ ଖୁବ୍ ଜୋର୍‌ରେ କରତାଳି ମାରିଲେ ।

ହେମ କେବଳ ବ୍ରତୀ ସହ କଥାବାର୍ତ୍ତା କରୁଥିଲା ।

ସୁଜାତାଙ୍କ ପାଖରେ ବ୍ରତୀ ଯେବେଠାରୁ ଦୂରତ୍ୱ ରଖି ଅଚିହ୍ନା ହୋଇଗଲା, ମଝିରେ ମଝିରେ ତା' ମୁହଁକୁ ଚାହିଁ ସୁଜାତା କଥା ହେବାକୁ ଭୟ ପାଉଥିଲେ; ସେତେବେଳେ ହେମ ହିଁ ତାକୁ କହିପାରୁଥିଲା 'ତୁମେ ଯେଉଁ ରାଜକାର୍ଯ୍ୟରେ ଯାଉଛ, ମୁଁ ସେଇଟା ଜାଣିଛି । ଏବେ ମୁଠେ ଖାଇ ଦେଇ ମତେ ଉଦ୍ଧାର କର ବାବୁ ।'

ସେଦିନ ଦୀଘା ଯାଉଛି କହି ବ୍ରତୀ ଦୀଘା ନ ଯାଇ ଅଧା ବାଟରେ ବସ୍‌ରୁ ଓହ୍ଲାଇ ଅନ୍ୟ ଜାଗାକୁ ଯାଇଥିଲା । ସେହିଦିନ ହେମ ତା' ସୁଟ୍‌କେଶ୍ ସଜାଡ଼ି ଥିଲା ।

ହେମ କହିଥିଲା- ଜାଣିଛ ମା', ଛୋଟ ବାବୁ ଗୋଟେ ଝିଅକୁ ଭଲ ପାଉଛି । ଠାକୁର ଦର୍ଶନ କରି ଆସିବାବେଳେ ଦେଖିଛି ଛୋଟବାବୁ ଘରୁ ବାହାରିଲା-ଝିଅଟି ରାସ୍ତା କଡ଼ରେ ଠିଆ ହୋଇଥିଲା, ତା'ପରେ ଦୁହେଁ ଏକାଠି ଗଲେ । ସାବନା ରଙ୍ଗର ଝିଅଟି ।

ସେହି ନନ୍ଦିନୀ । ସୁଜାତାଙ୍କ ଛାତି ଧଡ଼ଧଡ଼ ହେଉଛି କାହିଁକି ? ବ୍ୟାରାଲ୍‌ଗନ୍ ଖାଇ ବେଶୀ ସମୟ ସେ ଶୋଇ ନାହାଁନ୍ତି । ସେଥିପାଇଁ ନା ନନ୍ଦିନୀ ଫୋନ୍ କଲା ବୋଲି ?

ଗାଧୁଆଘରୁ ସଜବାଜ ହୋଇ ବିନି ବାହାରିଲା । କାନ୍ଧଯାଏ କଟା ବବ୍‌କରା ରୁକ୍ଷ କେଶ, ନୀଳଶାଢ଼ୀ ଓ ନୀଳ କାର୍ଡିଗାନ । ରଙ୍ଗ ମିଶାଇ କରି ପିନ୍ଧିବାରେ ବିନିର କେବେ ଭୁଲ୍ ହେବନି, ନୀପା କିମ୍ବା ତୁଲୀର ମଧ । ବିନି ବେଶ୍ ଶାନ୍ତ ଓ ସୌମ୍ୟ ଦେଖାଯାଉଛି ।

- ମା' କିଏ ଫୋନ୍ କରିଥିଲା ?

- ନନ୍ଦିନୀ

- ନନ୍ଦିନୀ ?

- ବ୍ରତୀର ବନ୍ଧୁ ।

ବିନିର କୌତୁହଳ ଭରା ପ୍ରଶ୍ନ - ମା', ତଳକୁ କାହିଁକି ଯାଉଛ ?

- କ'ଣ ହେବ ନ ହେବ ଦେଖେଁ । ତୁ ସୁମନକୁ ନିଦରୁ ଉଠା । ତା'ର ତ ଆଜି ସ୍କୁଲ ଅଛି । ବସ୍ ଆସିଯିବ ।

- ତୁଲୀ ତଳକୁ ଯାଇଛନ୍ତି ମା', ବିନି କହିଥିଲା ।

ସୁଜାତା ହସିଲେ ।

ଆଜି ତୁଲୀର ନିର୍ବନ୍ଧ, ଆଜି ମଧ ତା'ର ବିଶ୍ୱାସ ହେଉନି ଯେ ସେ ଯାଇ ତଦାରଖ ନକଲେ ଏ ଘରର ସକାଳର ଚା ଜଳଖିଆ, ଦ୍ୱିପ୍ରହରର ରନ୍ଧାବଢ଼ା, ଅପରାହ୍ନର ଗୃହ ସାଜସଜ୍ଜା ଆଦି ସବୁ ଠିକ୍ ଭାବରେ ହେବ ବୋଲି । ତୁଲୀ କାହାକୁ ବିଶ୍ୱାସ କରିପାରେନି ।

ଷୋଳ ବର୍ଷ ବୟସରେ ପାଠ ପଢ଼ା ଛାଡ଼ି ତୁଲୀ ହସ୍ତଶିଳ୍ପ (craft)ଶିଖିଲା । ସେହି ବୟସରୁ ସଂସାରର ଦାୟିତ୍ୱ ନେଲା । ନିଜର ଚାଟାର୍ଡଆକାଉଣ୍ଟ ଫାର୍ମ ଠିଆ ହୋଇଯିବା ପରେ ସୁଜାତାକୁ ଚାକିରି ଛାଡ଼ିଦେବା ପାଇଁ ଦିବ୍ୟନାଥ କହିଥିଲେ । ସୁଜାତା ଶୁଣି ନଥିଲେ । ବ୍ରତୀକୁ ଆଠବର୍ଷ ବୟସ ହେବା ପର୍ଯ୍ୟନ୍ତ ଶାଶୁ ବଞ୍ଚିଥିଲେ । ସେ ପର୍ଯ୍ୟନ୍ତ ସୁଜାତା ମଧ ନିଜ ପସନ୍ଦ ମୁତାବକ ଶାଢ଼ୀ ଖଣ୍ଡିଏ କିଣିବାକୁ ଅଧିକାର ପାଇ ନଥିଲେ ।

ସେଥିପାଇଁ ଏହି ବ୍ୟାଙ୍କ୍ ଯିବା ଆସିବା, ନିଜ ପାଇଁ ନିଜର କରି ଏକ ଜୀବନ

ଖୋଜି ପାଇବା ଆଦି ସବୁ କିଛି ସୁଜାତାଙ୍କ ପାଇଁ ଅତ୍ୟନ୍ତ ଦାମୀ ମନେ ହୋଇଥିଲା ଏବଂ ଏହି କାରଣରୁ ସେ ଚାକିରି ଛାଡ଼ି ନଥିଲେ ।

ତୁଲୀ ତା' ଜେଜେମାଙ୍କ ଚେହେରା ଓ ପ୍ରକୃତି ପାଇଛି । ସୁଜାତା ଚାକିରି ନ ଛାଡ଼ିବାରୁ ତା'ର ବାପା ଓ ଜେଜେମା ଖୁବ୍ ଅସନ୍ତୁଷ୍ଟ ହୋଇଥିଲେ । ମା ଓ ପୁଅ ସବୁବେଳେ କୁହାକୁହି ହୁଅନ୍ତି ଯେ, ସୁଜାତା ସ୍ୱାଧୀନ ଭାବେ ବୁଲାବୁଲି କରିବାକୁ ଚାହାଁନ୍ତି, ଘର ସଂସାର କରିବା ତାଙ୍କୁ ଭଲ ଲାଗେନି ଏବଂ ଭଲ ଲାଗେନି ପିଲା ଛୁଆଙ୍କ ଜଞ୍ଜାଳ ।

ତୁଲୀ ମଧ କୁହେ, ଏବେ ମଧ କହୁଛି-ଯେଉଁ ଘରର ଗୃହିଣୀ ଦିନର ଦଶଘଣ୍ଟା ଘର ବାହାରେ କଟାନ୍ତି, ସେ ଘରର ଝିଅ ବାଧ ହୁଏ ଘରର ସବୁ କଥା ବୁଝିବାକୁ । ମୁଁ ନ କଲେ କେଉଁ କାମ ଏଠି ହେବ ?

ତୁଲୀ ସଦା ସର୍ବଦା ଅସନ୍ତୁଷ୍ଟ ଓ ଅପ୍ରସନ୍ନ, ଚାହା ତିଆରି କରିବା କିମ୍ୱା କ'ଣ ରନ୍ଧା ହେବ ବରାଦ ଦେବାଟା ସେ କିପରି ଏକ ଶହୀଦ ମନୋଭାବ ନେଇ କରେ । ବାହା ହୋଇଗଲେ ତା'ର ଏ ପ୍ରକୃତି ବଦଳି ଯାଇପାରେ, ଏକଥା ଆଶା କରାଯାଏ ।

ହସ୍ତଶିଳ୍ପ ଶିଖିବା ଅବସ୍ଥାରେ ଜଣେ ବନ୍ଧୁଙ୍କ ସହିତ ଶାଢ଼ୀ ଛପାର ଦୋକାନ କରିଥିଲା ତୁଲୀ । ସେହି ସୂତ୍ରରେ ଟୋନି କାପାଡ଼ିଆ ସହିତ ତା'ର ପରିଚୟ । ଆଜି ବ୍ରତୀର ଜନ୍ମ ଦିନରେ ତୁଲୀର ନିର୍ବନ୍ଧ ଘୋଷଣା କରିବାର ସିଦ୍ଧାନ୍ତ ନେଇଛନ୍ତି ଟୋନିର ମା' । ଶ୍ରୀମତୀ କାପାଡିଆଙ୍କ ଗୁରୁ ସ୍ୱାମୀଜୀ ଆମେରିକାବାସୀ-ତାଙ୍କ ଗଣନା ଅନୁସାରେ ଏହି ଶୁଭଦିନ ସ୍ଥିର କରିଛନ୍ତି । ସ୍ୱାମୀଜୀଙ୍କ ଶିଷ୍ୟମାନେ ସ୍ୱାମୀଙ୍କ ପଞ୍ଜିକା ମାନି ଚଳନ୍ତି । ସେ ପଞ୍ଜିକାରେ କୌଣସି ଛୁଟି ନାହିଁ । ତିନିଶ' ପଞ୍ଚଷଠି ଦିନ ହେଲା କର୍ମ ଓ ଧାନର ଦିନ । ଟୋନି ମା'ଙ୍କ କଥା ମାନିନେଇ ଦିବ୍ୟନାଥ ବା ତୁଲୀ ସୁଜାତାଙ୍କ ମତ ନେବାକୁ ଭୁଲି ଯାଇଛନ୍ତି ।

ତୁଲୀ ଅନେକ ପୂର୍ବରୁ ମନେ ମନେ ତାଙ୍କ ସହିତ କଳି କରୁଥିବା କଥା ତଳକୁ ଓହ୍ଲାଇ ସୁଜାତା ବୁଝି ପାରିଲେ । ଆଜି ତା'ର ଜୀବନର ଏକ ବିଶେଷ ଦିନ । କିନ୍ତୁ ସୁଜାତା କାହିଁକି ଏହି ବିଶେଷ ଦିନଟିକୁ ସେପରି ଗୁରୁତ୍ୱ ଦେଇ ଭାବୁ ନାହାଁନ୍ତି, ଏଥିପାଇଁ ତା ମନରେ ରାଗ ।

- ମା' ତୁମେ କ'ଣ ଖାଇବ ?

- ଟିକେ ଲେମ୍ବୁ ସର୍ବତ ।

- କାହିଁକି ? ଯନ୍ତ୍ରଣା ବଢ଼ିଛି କି ?

- ନା ଏବେ ଆଉ ନାହିଁ ।

- ଜାଣେନି ତୁମେ ଜାଣିଶୁଣି ଏତେ ଯନ୍ତ୍ରଣା ଭୋଗୁଛ କାହିଁକି ? 'ଆପେଣ୍ଡିକ୍ସ'

(appendix) ଅପରେସନ୍ ତ ଆଜିକାଲି ଏକ ସାଧାରଣ ଅପରେସନ୍ ।

ସବୁବେଳେ ନୁହେଁ । ଆପେଣ୍ଡିକ୍‌ସ ଅପରେସନ୍ ଭାବିଚିନ୍ତି କରିବା ଉଚିତ୍ । ଆପେଣ୍ଡିକ୍‌ସ ଫୁଲିବା କିମ୍ବା ପାଚିବା ପୂର୍ବରୁ ସାମାନ୍ୟ ଯନ୍ତ୍ରଣା ହେଲେ କାଟି ଦେବା ଦରକାର । ସୁଜାତାଙ୍କ କ୍ଷେତ୍ରରେ ସେକଥା ହୋଇନି । ତା'ଛଡ଼ା ଡାକ୍ତର ସନ୍ଦେହ କରନ୍ତି ସୁଜାତାଙ୍କ ଆପେଣ୍ଡିକସ୍ ପଚି ମାଂସ କ୍ଷୟ ହେବା ଅବସ୍ଥାରେ । ଠିକ୍ ସମୟରେ ଅପରେସନ୍ ନ କଲେ ପଚିସଢ଼ି ଯାଇପାରେ । ଫାଟି ଗଲେ ତ ବିପଦ ଆହୁରି ବେଶୀ । ଅଥଚ ସୁଜାତାଙ୍କ ହାର୍ଟ ଦୁର୍ବଳ, ଶରୀର ରକ୍ତଶୂନ୍ୟ । ତେଣୁ ସେହି ମୁହୂର୍ତ୍ତରେ ଅପରେସନ୍ ସମ୍ଭବ ନୁହେଁ । ଗତକାଲି ଏକଥା ସୁଜାତା ନିଜେ ବୁଝି ଆସିଛନ୍ତି । ତେବେ ତୁଲୀକୁ ସେ କଥା କହିଲେନି । କେବଳ କହିଲେ ଅପରେସନ୍ କରାଇବାକୁ ହେବ ।

- କେବେ ?

- ତୋ' ବାହାଘର ଆଗ ହୋଇଯାଉ ।

- ହୁଏତ ତା' ପୂର୍ବରୁ କରିବି । ହେମ ! ହେମ !

- କ'ଣ ମା ।

- ମୋତେ ଟିକେ ଲେମ୍ବୁପାଣି ଦେଲୁ ।

ସୁଜାତା ଟେବୁଲ ପାଖରେ ବସିଲେ ।

- ଏତେ ଭୋରରୁ କିଏ ଟେଲିଫୋନ୍ କରିଥିଲା ?

- ନନ୍ଦିନୀ !

ତୁଲୀର ମୁହଁ ନାଲି ପଡ଼ିଗଲା । ଅସନ୍ତୋଷରେ ଭ୍ରୁ କୁଞ୍ଚିତ ହେଲା । ସେ ଚା'ର ରଙ୍ଗ କେତେଗାଢ଼ ହେଲା ଜାଣିବା ପାଇଁ ଚାହା ପାତ୍ରରେ ଚାମଚକୁ ଶବ୍ଦ କରି ଘାଣ୍ଟିଲା ଓ ତା'ପରେ କହିଲା-ଗୋଟିଏ ଘଣ୍ଟା ବଜାଇବାର ନିୟମ କଲେ ଭଲ ହୁଅନ୍ତା । ସମସ୍ତେ ଏକ ସମୟରେ ଆସି ଚାହା ପିଇ ଯାଆନ୍ତେ, ଯେତେବେଳେ ଯାହାର ଇଚ୍ଛା ଆସୁଛନ୍ତି । ଏଥିରେ କାମ କରିବା ଲୋକର କଷ୍ଟ; ମୋର ମଧ୍ୟ ଅସୁବିଧା ହେଉଛି ।

ସୁଜାତା କୌତୁହଳି ହୋଇ ତୁଲୀକୁ ଦେଖିଲେ । ଠିକ୍ ଏଇ ରକମ ସ୍ୱରରେ ଶାଶୁ କଥା କହୁଥିଲେ । ପିଲାମାନେ ଆରାମ ଆୟାସ କରିବେ କି ଖାଇଲା ବେଳେ ଖୁସି ଗପ କରିବେ, ଏ ସମସ୍ତ ଶାଶୁ ସହ୍ୟକରି ପାରୁନଥିଲେ । ସର୍ବଦା ଅସନ୍ତୋଷ, ବିରକ୍ତ ହୋଇ ଗାଳି ଦେଉଥିଲେ । ସମସ୍ତେ ତାଙ୍କରି ଅନୁଶାସନ ମାନି ନେଇଥିଲେ । ଏକମାତ୍ର ବ୍ରତୀ; ସେ ଅତି ପିଲାବେଳୁ ତାଙ୍କ ଶାସନ ମାନୁ ନଥିଲା । ସକାଳୁ ଡେରିରେ ନିଦରୁ ଉଠୁଥିଲା । ନିୟମ ଅନୁସାରେ ତା ଖାଇବା ଟେବୁଲ୍ ଉପରୁ ଉଠାଇ ନିଆଯାଉଥିଲା । ସେ ରୋଷେଇ ଘରେ

ହେମ ପାଖରେ ପିଢ଼ାରେ ବସି ନିଜ ଖାଇବା ଖାଉଥିଲା ।

ଆଶ୍ଚର୍ଯ୍ୟ ପରିବାର । ଆଶ୍ଚର୍ଯ୍ୟ ଧରଣର ଶୃଙ୍ଖଳା । ଅସନ୍ତୁଷ୍ଟ ହୋଇ ତୁଲୀ କହିଲା । ଏବେ ମାତ୍ର ଅଠେଇଶ ବର୍ଷ ବୟସରେ ତୁଲୀ ମନରେ ଏତେ ଅସନ୍ତୋଷ । ଜୀବନଟା କାହିଁ କେତେ ଲମ୍ବା ହୋଇ ପଡ଼ିଛି ଆଗକୁ ।

ଜ୍ୟୋତିର ବେଶୀ ରାତିରେ ଶୋଇବା ଅଭ୍ୟାସ । ତା'କୁ ଏତେ ଶୀଘ୍ର ଉଠାଇ ଲାଭ କ'ଣ ? ତୋ' ବାପା ତ ଚା' ପିଅନ୍ତି ନାହିଁ । ଦହି ସରବତ ଖାଇବେ...

ଲୋକଟି ଘସି ମୋଡ଼ି ଯିବା ପରେ ପରେ ମୁଁ ଉଠାଇ ଦେଇଛି । ବାପାଙ୍କ କଥା କହୁନି ।

- ବିନି ଦିଅଁଙ୍କ ଘରେ ଫୁଲ ଚନ୍ଦନ ଦେଇ ଆସିବ ।

- ଯେତେସବୁ ଦେଖେଇହେବା ଗୁଣ ।

- ଦେଖେଇ ହେବା କାହିଁକି ? ତୋ ଜେଜେମା ନିୟମିତ ପୂଜାର୍ଚ୍ଚନା କରୁଥିଲେ । ମତେ ଭଲଲାଗେନି । ନିୟମ ରକ୍ଷା ପାଇଁ ଫୁଲ ଚନ୍ଦନ ଯାହି ତାହି ଦେଇ ଦେଉଥିଲି । ବିନିକୁ କିନ୍ତୁ ପୂଜା କରିବାକୁ ଭଲ ଲାଗେ । ଏଥିରେ ଦେଖେଇ ହେବା କଥା ଆସିଲା କେଉଁଠୁ ?

- ଜାଣେନି ବାବା । ଜନ୍ମ ତ ବିଦେଶରେ । ସେଠାରେ ଷୋଳବର୍ଷ କଟାଇବା ପରେ ଏତେ ଭକ୍ତି କୁଆଡୁ ଆସେ କେଜାଣି ?

ଇଂଲଣ୍ଡରେ ତା'ର ବାପା ଘର କରିଛନ୍ତି । ସେଠି ସେ ରହୁଥିଲା । ବିଦେଶରେ ବଢ଼ିବା ସାଙ୍ଗରେ ଦିଅଁପୂଜା କରିବାରେ ଅସୁବିଧା କେଉଁଠି ? ମୁଁ ତ କାହିଁ ଦେଖି ପାରୁନି । ଭକ୍ତିଥିଲେ ସିନା ହୁଅନ୍ତା । ତା ପାଇଁ ଘର ଏକ ପ୍ରକାର ସୌଖୀନ ସାଜସଜ୍ଜା ।

- ତୁ ତ ପାର୍କ ଷ୍ଟ୍ରିଟ୍‌ରେ ଥିବା ସ୍ୱାମୀଙ୍କ ମନ୍ଦିରଯାଉ ।

- ସେ କଥା ସଂପୂର୍ଣ୍ଣ ଅଲଗା ମା ।

- ମୁଁ ସେ କଥା ଭାବିନି । ଯାହାର ଯେଉଁଥିରେ ବିଶ୍ୱାସ ସେ ତାଙ୍କୁ ହିଁ ବିଶ୍ୱାସ କରୁ । କିନ୍ତୁ ଅନ୍ୟର ବିଶ୍ୱାସ ଦେଖେଇ ହେବା ଓ ନିଜ ବିଶ୍ୱାସ ଠିକ୍, ସେକଥା କହିବ କାହିଁକି ?

ବ୍ରତୀ ତ କୁହେ । ଅନ୍ୟମାନଙ୍କ ବିଶ୍ୱାସକୁ ବ୍ୟଙ୍ଗ କରେ ।

- ତୋ'ର ସ୍ୱାମୀଜୀଙ୍କ ଉପରେ ବିଶ୍ୱାସ, ବିନିର ଦିଅଁଙ୍କ ଉପରେ ବିଶ୍ୱାସ, ଦୁଇଟା କଥା ମୋଟା ମୋଟି ଏକ । ବୁଝିଲୁ ତୁଲୀ-ବ୍ରତୀ ଯାହା ବିଶ୍ୱାସ କରିଥିଲା, ଅନ୍ୟମାନଙ୍କ ବିଶ୍ୱାସ ଆଉ ତା'ର ବିଶ୍ୱାସରେ ପାର୍ଥକ୍ୟ ଥିଲା ଅନେକ ବେଶୀ । ଆଉ ବ୍ରତୀ ତ କାହାକୁ କେବେ ଥଟ୍ଟା ତାମସା କରିବାର ମୋର ମନେ ପଡୁନି । ହଁ, ସେ ଯୁକ୍ତି କରୁଥିଲା, ସେ କଥା ତୁ କହିପାରୁ । ଆଉ ତା' ଯୁକ୍ତିରେ ହାରି ତୁ ରାଗି ଯାଉଥିଲୁ ଏବଂ ତତେ ରଗେଇ ସେ

ମଜା ପାଉଥିଲା ।

- ବିଶ୍ୱାସ କରୁଥିଲା ବୋଲି କହୁଛ କାହିଁକି ମା ? ତା'ର ଆଦୌ ବିଶ୍ୱାସ ନଥିଲା ।

- ତୁଲୀ ! ମୁଁ ବ୍ରତୀ ବିଷୟରେ ତୋ' ସହିତ ଆଲୋଚନା କରିବାକୁ ଚାହେଁନା ।

- କାହିଁକି ?

- ଲାଭ କ'ଣ ? ତୁ ବ୍ରତୀକୁ ଠିକ୍ ଚିହ୍ନି ପାରିନୁ ।

- ଏ ପର୍ଯ୍ୟନ୍ତ ତୁମେ...

- ତୁଲୀ ତୁ ଚୁପ୍ ରହିଲୁ ।

ସୁଜାତାଙ୍କ ହାତ ଥରି ଉଠିଲା, ଧରିଥିବା ଗିଲାସ ତଳେ ଥୋଇଲେ । କେତୋଟି ଅସହ୍ୟ ମୁହୂର୍ତ୍ତ । ତା'ପରେ ନିଜକୁ ସମ୍ଭାଳି ନେଇ ସୁଜାତା କହିଲେ, ''ହେମ, ବିନିକୁ ଚା' ପିଇବା ପାଇଁ ଡାକି ଦେ ।''

ତୁଲୀ ତାଙ୍କର ଗର୍ଭସ୍ଥ ସନ୍ତାନ । ଅଥଚ ତାଙ୍କ ଆଡକୁ ଅପରିଚିତ ହିଂସ୍ର,ଦୃଷ୍ଟିରେ ଅନାଇ ଅଚିହ୍ନା ସ୍ୱରରେ ପଚାରିଲା-

- ଆଜି ବ୍ୟାଙ୍କ୍ ଲକରରୁ ମୁଁ ଯାଇ ଗହଣା ଆଣିବି ?

- ମୁଁ ଯିବି ।

- ସନ୍ଧ୍ୟାରେ ତୁମେ ଘରେ ରହିବ ତ'?

- ରହିବି ।

- ଆଶାକରେ ଟୋନିର ବନ୍ଧୁମାନଙ୍କ ସହିତ ଅନ୍ତତଃ ଆଜି ଦିନକ ତୁମେ ଭଲ ବ୍ୟବହାର କରିବ ?

- ତୁମେମାନେ କ'ଣ ସରୋଜ୍ ପାଲ୍‌କୁ ନିମନ୍ତ୍ରଣ କରିଚ ?

- କରିଛୁ । ଆସିବେ କି ନାହିଁ ଜାଣେନି ।

- ସରୋଜକୁ ?

ସେହି ସରୋଜ୍ ପାଲ୍, ଯାହାକୁ କ୍ଷମା କରାଯାଇପାରିବ ନାହିଁ । ତାର ଅପରାଧ ଅକ୍ଷମଣୀୟ । ଆସ୍ଫାଳନ ବୃଥା । ଦୁଇ ବର୍ଷ ହେବ ସରୋଜ ପାଲ୍‌ଙ୍କୁ ଏହି ବ୍ୟାପକ ଖାନ୍‌ତଲାସୀ, ଧରପଗଡ, ତଦନ୍ତ ଏବଂ ଶାସ୍ତିର ଦାୟିତ୍ୱ ଦିଆଯାଇଛି; ତାଙ୍କର ଅସାମାନ୍ୟ କର୍ମ ଦକ୍ଷତା ଓ ନିର୍ଭୀକତା ପାଇଁ....

ମୁକ୍ତିର ଦଶକ, ମୁକ୍ତିର ଦଶକ ! ସରୋଜ ପାଲ୍ ପୋଲିସ୍ ଫୌଜକୁ ଦଳବଦ୍ଧ କରିଛନ୍ତି ଏବଂ ନିଜେ ଦଳପତି ହୋଇ ନିର୍ଦ୍ଦେଶ ଦେଇଛନ୍ତି । ମା କାଳୀ ଏଥର ରକ୍ତମୁଖା ।

ସେ ରକ୍ତ ଚାହାନ୍ତି । ସରୋଜ ପାଲ୍‌ଙ୍କ ଚେହେରା ଚମତ୍କାର, ହସ ସୁନ୍ଦର ଓ ଉଚ୍ଚାରଣ ସ୍ପଷ୍ଟ । ଶୁଣନ୍ତୁ ମିଷ୍ଟର ଚାଟାର୍ଜୀ, ମୁଁ ଆପଣଙ୍କୁ ପ୍ରତିଶ୍ରୁତି ଦେଉଛି । ମିସେସ୍ ଚାଟାର୍ଜୀ, ମୁଁ ଜାଣେ ମୋର ମଧ ଘରେ ମା' ଅଛନ୍ତି । ସରୋଜ୍ ପାଲ୍ । ହଁ, ଘର ଭିତର ତନ୍ନ ତନ୍ନ କରି ଦେଖନ୍ତୁ । ନା ମିସେସ୍ ଚାଟାର୍ଜୀ ଆପଣଙ୍କ ପୁଅ ଅସାମାଜିକ ଗୁଣ୍ଡା ହୋଇ ଆପଣଙ୍କୁ ମିଛ କହିଥିଲା । ସେ ଦୀଘା ଯାଇ ନଥିଲା । ଅଧାବାଟରୁ ଫେରି ଆସିଥିଲା । ବିପଥଗାମୀ ଯୁବକ । ଗଣତନ୍ତ୍ରର ଅଙ୍ଗରେ ଏମାନେ କର୍କଟ ରୋଗ ସଦୃଶ । ମିଃ. ଚାଟାର୍ଜୀ,କୌଣସି ଖବର କାଗଜରେ ବାହାରିବ ନାହିଁ । ଆପଣ ଟୋନିର ଭାବି ଶ୍ୱଶୁର, ଆଉ ଟୋନି ମୋର.... ସରୋଜ ପାଲ୍ ।

ତୁଳୀ ସୁଜାତାଙ୍କୁ ଏକ ଲୟରେ ଚାହିଁଥାଏ ।

- ହେଲା, ଢ଼େର ହେଲା ମା ! ଆଜକୁ ଦୁଇବର୍ଷ ହେଲା ଏ ଘରକୁ ତୁମେ ଏକ ପ୍ରକାର ଶ୍ମଶାନରେ ପରିଣତ କରିଛ । ବାପା ତୁମକୁ ପାଟି ଫିଟାଉ ନାହାଁନ୍ତି । ଭାଇ ଏକ ପ୍ରକାର ଅପରାଧୀଙ୍କ ପରି... ଏହି ଭଳି ଘଟଣା ଘଟିଲେ ସମସ୍ତେ ଚପାଇ ଦେବାକୁ ଚେଷ୍ଟା କରନ୍ତି । ତାହାହିଁ ସ୍ୱାଭାବିକ । ବ୍ରତୀ ଆଜି ମୃତ । ତୁମକୁ ଜୀବିତମାନଙ୍କ କଥା ଭାବିବାକୁ ପଡ଼ିବ ।

ଏତେ ଶୀଘ୍ର ଚପାଇ ଦେବାକୁ ଚେଷ୍ଟା ହୁଏ ? ଶବ ଚିହ୍ନଟ କରିବା ପୂର୍ବରୁ ଟେଲିଫୋନ୍‌ରେ ଖବର ପାଇ ତତ୍‌କ୍ଷଣାତ୍ ଧାଇଁ ଯିବା ପାଇଁ ବାପାଙ୍କର ମନ ହୁଏନି ? ପ୍ରଥମେ ମନେ ହୁଏ ନିଜ ଗାଡ଼ି କଣ୍ଢାପୁକୁର ସାମ୍ନାରେ ଠିଆ କରାଇବା ଅନୁଚିତ ହେବ ? ଟେଲିଫୋନ୍ ଆସିବାର୍ ବହୁ ପୂର୍ବରୁ ବାପା ଓ ଭାଇଙ୍କ ନିକଟରେ ବ୍ରତୀ ଥିଲା ମୃତ । ସେଥି ପାଇଁ ସୁଜାତା ଅବିଶ୍ୱାସ କଲେ ବି ସେମାନେ କଥାଟାକୁ ଅବିଶ୍ୱାସ କରି ପାରି ନଥିଲେ । ଯାହାଫଳରେ ସେ ଦୁହେଁ ପ୍ରଥମେ ଧରାଧରି କରି କଥାଟା ଚପେଇ ଦେବା ପାଇଁ ଧାଇଁ ଯାଇଥିଲେ ?

ହଠାତ୍ ସୁଜାତାଙ୍କର ମନେ ହେଲା ଏହା ଏକ ଉଦ୍ଭଟ ନାଟକ ଏବଂ ସେମାନେ ସମସ୍ତେ ଏ ନାଟକର ଅଭିନେତା, ଅଭିନେତ୍ରୀ ।

ବ୍ରତୀ ଏ ପରିବାରର ପିଲା ହେଲେ ମଧ ତା'କୁ ଯେପରି ନୃଶଂସ ଓ ହିଂସ୍ରଭାବରେ . ହତ୍ୟା କରାଗଲା ତା'ର ବାପା, ଭାଇ, ଭଉଣୀ ପ୍ରତ୍ୟେକ ସମାଜ ନିକଟରେ ଏ ଧରଣ ମୃତ୍ୟୁର କି ପ୍ରକାର ବ୍ୟାଖ୍ୟା କରିବେ, କିପରି ଅସୁବିଧାର ସମ୍ମୁଖୀନ ହେବେ, ସେ ବିଷୟରେ ବ୍ରତୀ ତିଳେମାତ୍ର ଭାବି ନଥିବା ଯୋଗୁଁ ଏମାନଙ୍କ ଶୃଙ୍ଖଳିତ ଜୀବନରେ ବ୍ୟାଘାତ ଘଟିଛି । ଯାହା ଯୋଗୁଁ ବିଶୃଙ୍ଖଳା ସେ ଆଜି ମୃତ । ଏବେ ଏମାନେ ମନେ ମନେ ସୁଜାତାଙ୍କୁ ବ୍ରତୀର ଦଳଭୁକ୍ତ କରିଛନ୍ତି ଏବଂ ନିଜକୁ ଅନ୍ୟ ଏକ ଦଳର ବୋଲି ଭାବିଛନ୍ତି ।

ଯେତେହେଲେ ମଧ ବାପା ଭାଇ ବଡ଼ ଭଉଣୀଙ୍କ ପକ୍ଷରେ ଏକଥା କହିବା କଷ୍ଟକର-ଦେଖନ୍ତୁ ମୋ ପୁଅ ଥିଲା...

- ଦେଖନ୍ତୁ ମୋ ଭାଇ ଥିଲା...

- ମୋ ସାନ ଭାଇ ଗୋଟେ...

- ଟୋନି - ବ୍ରତୀ ...

ସୁଜାତାଙ୍କୁ ସେମାନେ ବିରୋଧୀଦଳ ଭାବନ୍ତି । କାରଣ ତାଙ୍କ ଶୃଙ୍ଖଳିତ ସୁନ୍ଦର ଜୀବନରେ ଯେଉଁ ବିପର୍ଯ୍ୟୟ ଘଟିଲା ସେଥିପାଇଁ ସୁଜାତା କେବେହେଲେ ବ୍ରତୀକୁ ଦାୟୀ କରି ନଥିଲେ, ଦୋଷୀ ଭାବି ନଥିଲେ, ନିଜେ ଛାତି ବାଡ଼େଇ ମୁଣ୍ଡ ପିଟି କାନ୍ଦି ନଥିଲେ କିମ୍ବା ଏମାନଙ୍କ ମଧ୍ୟରୁ କାହାରି ଛାତିରେ ମୁଣ୍ଡ ରଖି ବିକଳରେ ବାହୁନି ନଥିଲେ । ଯେଉଁମାନେ କେବଳ ନିଜ ସ୍ୱାର୍ଥ କଥା ପ୍ରଥମେ ଭାବନ୍ତି, ସେମାନଙ୍କ ନିକଟରୁ ବ୍ରତୀର ମୃତ୍ୟୁ ପାଇଁ ସାନ୍ତ୍ୱନା ଆଶା କରିବେ ନାହିଁ, ଏହା ସେ ପ୍ରଥମରୁ ଜାଣିଥିଲେ । ବ୍ରତୀର ବାପା, ଭାଇ, ଭଉଣୀ ଏ ସମସ୍ତଙ୍କ ଠାରୁ ହେମକୁ ସେ ଅଧିକ ଆପଣାର ମନେ କରିଥିଲେ ।

ବ୍ରତୀ ଯେଉଁଦିନଠାରୁ ବଦଳିବା ଆରମ୍ଭ କଲା, ସେହିଦିନଠାରୁ ଏମାନେ ତା'କୁ ମନେ ମନେ ବିରୋଧୀଦଳଭୁକ୍ତ କରିଥିଲେ; ଏକଥା ମଧ୍ୟ ସୁଜାତାଙ୍କୁ ପ୍ରତେ ହେଲା । ଏମାନେ ଯାହା କରନ୍ତି ବ୍ରତୀ ସେସବୁ କରେ ନାହିଁ, ବଡ଼ ହୋଇ ଭବିଷ୍ୟତ ଜୀବନରେ ମଧ୍ୟ ସେ ଏସବୁ କରି ନଥାନ୍ତା, ଏକଥା ଏମାନଙ୍କୁ ଜଣାଥିଲା । ତେଣୁ ବ୍ରତୀ ଅନ୍ୟ ଶିବିରର ବାସିନ୍ଦା ।

ବ୍ରତୀ ଯଦି ଜ୍ୟୋତିପରି ଅତ୍ୟଧିକ ମଦ ପିଉଥାନ୍ତା, ନୀପା ସ୍ୱାମୀ ପରି ମାତାଲ ହୋଇଥାନ୍ତା, ନିଜ ବାପପରି ଏହି ଅଳ୍ପଦିନ ପର୍ଯ୍ୟନ୍ତ ଜଣେ ଟାଇପିଷ୍ଟ ସହିତ ଅବୈଧ ସଂପର୍କ ରଖିଥାନ୍ତା-ଏସବୁ କରିଥିଲେ କିମ୍ବା ଟୋନି କାପାଡିଆ ପରି ଠକ ଜୁଆଚୋର ହୋଇଥିଲେ, ସ୍ୱାମୀର ପିଉସୀ ପୁଅ ଭାଇ ସହିତ ବାସ କରୁଥିବା ବଡ଼ ଭଉଣୀ ନୀପା ପରି ଦୁଃଶ୍ଚରିତ୍ର ହୋଇଥିଲେ ବୋଧେ ଏମାନେ ବ୍ରତୀକୁ ବିରୋଧୀ ଦଳର ବୋଲି ଭାବି ନଥାନ୍ତେ ।

ଅନ୍ତତଃ ବ୍ରତୀକୁ ଦେଖି ଏମାନଙ୍କର ଯଦି ବିଶ୍ୱାସ ହୋଇଥାନ୍ତା ଯେ ବଡ଼ ହେଲେ ବ୍ରତୀ ସେମାନଙ୍କ ପରି ହେବ; ତା'ହେଲେ ସେମାନେ ବ୍ରତୀକୁ ବିପକ୍ଷ ବୋଲି ଭାବି ନଥାନ୍ତେ ।

ବ୍ରତୀ ସେମାନଙ୍କ ସଦୃଶ ଏହି ଧରଣର କାମ କରିବାରେ ଆଗ୍ରହ ଦେଖାଇ ନାହିଁ । ସ୍ୱାମୀ, ସନ୍ତାନ, ଜ୍ୱାଇଁ ଏମାନେ ସମସ୍ତେ ଏସବୁ କରନ୍ତି ବୋଲି ସୁଜାତା ନିଜକୁ ଦୁଃଖୀ ବୋଲି କେବେ ଭାବି ନାହାଁନ୍ତି । ପ୍ରଥମତଃ ଯାହା ଘଟେ ତା'କୁ ମାନିନେବା ହିଁ ତାଙ୍କର ଶିକ୍ଷା; ଏହା ଜୀବନର ଅଭିଜ୍ଞତାରୁ ପ୍ରାପ୍ତ । ଦ୍ୱିତୀୟତଃ ତାଙ୍କ ମନରେ କେବେହେଲେ ଏ ନେଇ ପ୍ରଶ୍ନ ଉଠିନି-ପ୍ରଶ୍ନ କରିବାର ନୈତିକ ଅଧିକାର ଯେ ତାଙ୍କର ରହିଛି ଏକଥା ସୁଜାତାଙ୍କୁ ଜଣା ନଥିଲା । ଦୁଃଖ ପାଇଛନ୍ତି, ଅଶେଷ ମାନସିକ ଯନ୍ତ୍ରଣା ଭୋଗିଛନ୍ତି । ଦିବ୍ୟନାଥ ସବୁଦିନେ ଘର-ବାହାରେ ପର ନାରୀ ସହ ମିଳାମିଶା ଘଟଣାରେ ଜଡ଼ିତ । ଶାଶୁଙ୍କର ଏଥିରେ ସସ୍ନେହ ପ୍ରଶ୍ରୟ ରହିଥିଲା । ଏହା ତାଙ୍କ ପୁଅର ପୁରୁଷ ପଣିଆ -ସେ ସ୍ତ୍ରୈଣ ନୁହେଁ । ସୁଜାତା ଏଥିରେ ଦୁଃଖ ପାଇଛନ୍ତି । ତା'ପରେ ମନକୁ ବୁଝାଇଛନ୍ତି; ଏ ପୃଥିବୀରେ ପରିପୂର୍ଣ୍ଣ ରୂପେ

ସୁଖୀ କିଏ ?

କିନ୍ତୁ ବ୍ରତୀ ଅନ୍ୟ ପ୍ରକାରର ଥିଲା । ଏତେ ସାନ ବେଳୁ ତାକୁ ମିଛ କହି କେହି ଭୁଲେଇ ପାରୁ ନଥିଲେ । ଯୁକ୍ତି ଦେଇ ବୁଝାଇଲେ ସେ କଥା ଶୁଣୁଥିଲା । ଶୁଣିବାକୁ ପଡ଼ିବ କହି ଧମକକୁ ସେ ଜମା ଖାତିର କରି ନଥିଲା । ସେ ଯେତେବେଳେ ବଡ଼ ହେଲା ତା' ମଧରେ ସୁଜାତା, ସ୍ୱାମୀ କିମ୍ବା ଅନ୍ୟ ସନ୍ତାନମାନଙ୍କଠାରୁ ସଂପୂର୍ଣ୍ଣ ପୃଥକ୍ ଅନ୍ୟ ଏକ ମାନବ ଜଗତ ଦେଖିଥିଲେ ।

ତା' ସହିତ ବହି ପଢ଼ା, ତାକୁ ଚିଡ଼ିଆଖାନା ବୁଲାଇ ନେବା, ତା' ସାଙ୍ଗମାନଙ୍କୁ ଘରକୁ ଡାକି ଗପ କରିବା ଇତ୍ୟାଦିରେ ସୁଜାତା ନିଜକୁ ହଜାଇ ଦେଇଥିଲେ । ତାଙ୍କର ବଞ୍ଚି ରହିବାର ଏକମାତ୍ର ନ୍ୟାୟସଂଗତ ବ୍ୟାଖ୍ୟା ହେଲା ବ୍ରତୀ । ବୋଧହୁଏ,ବୋଧହୁଏ ବ୍ରତୀ ବିଷୟରେ ସୁଜାତା ଅତ୍ୟନ୍ତ ଅଧିକାର ପ୍ରବଣ ହୋଇ ପଡିଥିଲେ ।

କେବଳ ବ୍ରତୀ ପାଇଁ ସୁଜାତା ସ୍ୱାମୀ ତଥା ଶାଶୁଙ୍କୁ ଅମାନ୍ୟ କରିଥିଲେ । ଅର୍ଥହୀନ ଶାସନ ଆଉ ସ୍ୱେଚ୍ଛାଚାରୀ ପ୍ରଶ୍ରୟ ଯାହା ଅନ୍ୟ ସନ୍ତାନମାନେ ଭୋଗ କରିଛନ୍ତି ,ସେହି ଗଣ୍ଡି ଭିତରେ ବ୍ରତୀକୁ ସେ ରଖିପାରିନଥିଲେ । ଅନ୍ୟ ସନ୍ତାନମାନେ ସଂପୂର୍ଣ୍ଣରୂପେ ଶାଶୁଙ୍କ ଆୟତ୍ତାଧୀନ ଥିଲେ । ବ୍ରତୀ ଉପରୁ ସୁଜାତା ନିଜ ଅଧିକାର ଛାଡ଼ି ନଥିଲେ । ଅତ୍ୟଧିକ ଜିଦ୍‌ଖୋର, ଅଧିକ ଅନୁଭୂତିପ୍ରବଣ, ଢ଼େର କଳ୍ପନା ବିଳାସୀ ବ୍ରତୀକୁ ସୁଜାତା ସର୍ବଦା ନିଜ ସ୍ନେହ ଛାୟାରେ ବଡ଼ କରିଥିଲେ । ସ୍ୱାମୀ ଓ ଶାଶୁଙ୍କ ଆଧିପତ୍ୟର ଦାଉରୁ ବ୍ରତୀକୁ ରକ୍ଷା କରିବା ପାଇଁ ସୁଜାତାଙ୍କୁ କମ୍ କଷ୍ଟ କରିବାକୁ ପଡିନାହିଁ ।

ସେଥିପାଇଁ କ'ଣ ଏମାନେ ଏତେ ଦୂର ନିର୍ଦ୍ଦୟ ? ନା ବ୍ରତୀ ପାଇଁ ଏମାନଙ୍କ ମନରେ କିଛି ପାପବୋଧ ରହିଥିଲା ? ତାହା ଘୋଡ଼ାଇବା ପାଇଁ ତୁଲୀ ଏତେ ରୁକ୍ଷ, ଦିବ୍ୟନାଥ ଏତେ ଅପରାଧୀ ଓ ସଙ୍କୁଚିତ ; ଜ୍ୟୋତି ଏତେ ନମ୍ର ?

ଏସବୁ କଥା ସୁଜାତା କିଛି ମୁହଁରେ କହିଲେ ନାହିଁ । କହିଲେ - ତୁଲୀ ତୁ ଜୀବନରେ ଖୁବ୍ ସୁଖୀ ହେବୁ ।

❑❑❑

# ।। ମଧ୍ୟାହ୍ନ ।।

ଦୁଇ ଲକ୍ଷ ଲୋକଙ୍କ ବସତି ସ୍ଥଳ ଏହି କଲୋନୀ କୌଣସି ବିଧିବଦ୍ଧ ଯୋଜନା ଅନୁଯାୟୀ ଗଢ଼ି ଉଠିନି । ପଶ୍ଚିମବଙ୍ଗ ରାଜ୍ୟର ଏ ହିଁ ପ୍ରଥମ ଜବରଦଖଲ କଲୋନୀ । ଆଗେ ଏ ଅଞ୍ଚଳ ଜମିଦାରମାନଙ୍କର ଥିଲା । କେତେଟା ଫୁଲ ବଗିଚା, ଖୋଲା ପଡିଆ ଓ ଅସଂଖ୍ୟ ପୋଖରୀ । ଏସବୁକୁ ଘେରି କେତେଟା ଛୋଟ ଗାଁ । ସତଚାଳିଶ ମସିହା ପରେ ଏ ଅଞ୍ଚଳର ଜନସଂଖ୍ୟା ବଢ଼ିବାରୁ କ୍ରମେ ଏ ଅଞ୍ଚଳର ଗୋଟେ ଯୋଜନାବଦ୍ଧ ମାନଚିତ୍ର ତିଆରି କରାଗଲା । ପଡ଼ିଆ, ନଡ଼ିଆ ବଗିଚା, ଧାନ ଜମି, ଗାଁ ଗଣ୍ଡା ସବୁ ଗ୍ରାସ କରିକରି ଗଢ଼ି ଉଠିଲା କଲୋନୀ ।

ଏ ଅଞ୍ଚଳରୁ ସବୁ ସମୟରେ ବିରୋଧୀ ଦଳ ହିଁ ଭୋଟ ପାଇଛି । ସେଥିପାଇଁ ସରକାର ପକ୍କାରାସ୍ତା, ସ୍ୱାସ୍ଥ୍ୟ ଓ ଶିକ୍ଷା କେନ୍ଦ୍ର, ପର୍ଯ୍ୟାପ୍ତ ସଂଖ୍ୟାରେ ନଳକୂପ, ନିୟମିତ ବସ୍ ଚଳାଚଳ ପ୍ରଭୃତି କୌଣସି ସୁବିଧା କରି ନାହାଁନ୍ତି । ବିଗତ ଦୁଇ ଦଶନ୍ଧି ମଧ୍ୟରେ ଯେଉଁମାନେ ନିଜ ନିଜର ଅବସ୍ଥା ସୁଧାରି ଧନୀ ହୋଇଛନ୍ତି, ସେମାନେ ମଧ୍ୟ ଏ ଅଞ୍ଚଳ ପାଇଁ କିଛି କରି ନାହାଁନ୍ତି ।

ଏତେ ଦିନ ପରେ କଲିକତା ନଗର ଉନ୍ନୟନ ସଂସ୍ଥା (C.M.D.O)ର ନିଦ ଭାଙ୍ଗିଛି ବୋଲି ରାସ୍ତା ଖୋଳା ଚାଲିଛି ।

ଏବେ ଆଉ ଏ ଅଞ୍ଚଳରେ ଅଶାନ୍ତି ନାହିଁ ,କି ଡର ଭୟ ନାହିଁ । ହଠାତ୍ ଦୋକାନ ବଜାର ବନ୍ଦ ହୁଏନା । ଘରକୁ ଘର କବାଟ କିଳା ଯାଏନା । ଉର୍ଦ୍ଧ୍ୱଶ୍ୱାସରେ ଜୀବନ ବଞ୍ଚାଇବା ପାଇଁ ଦୌଡି ପଳାନ୍ତିନି ରିକ୍ସାବାଲା, ଲୁମଡଲୁରା କୁକୁର କିମ୍ୱା ପଥଚାରୀ ମଣିଷ । ଏବେ ଆଉ ହଠାତ୍ ବୋମା ଫୁଟିବାର କାନଫଟା ଶବ୍ଦ, ମାର୍ ମାର୍ ଧର୍ ଧର୍ ଚିତ୍କାର , ମୁମୂର୍ଷୁ ଲୋକକୁ ବେଢ଼ି ରହିଥିବା ଘାତକମାନଙ୍କ ଉଲ୍ଲାସ ଓ ହୋହଲ୍ଲା ପ୍ରଭୃତି ଶୁଣାଯାଏନା ।

କଳାରଙ୍ଗର ଗାଡି ଗୁଡିକ ଏଠି ଆଉ ପଇଁତରା ମାରନ୍ତିନି । କୌଣସି କିଶୋରକୁ ବନ୍ଧୁକ ଉଞ୍ଚେଇ ହେଲମେଟ୍ ପିନ୍ଧା ପୋଲିସ୍ ଓ ମିଲିଟାରୀ ଲୋକେ ଧମକ୍ ଦିଅନ୍ତିନି କି ଗାଡ଼ି ଚକାରେ ଦଉଡ଼ି ବାନ୍ଧି କାହାକୁ ରକ୍ତାକ୍ତ କରି ଘୋଷାରି ଘୋଷାରି ନିଆଯିବାର ଦୃଶ୍ୟ ଆଖିରେ ପଡ଼େନି ।

ଏବେ ରାସ୍ତା ଘାଟରେ ନା ଦେଖିବାକୁ ମିଳେ ରକ୍ତର ଦାଗ, ନା ଶୁଭେ ମା କଣ୍ଠର କରୁଣ ବିଳାପ ଧ୍ୱନି । ଏମିତି କାଛରେ ମରାଯାଇଥିବା ପୁରୁଣା ଲେଖାମାନଙ୍କୁ ନୂଆ

ଲେଖାମାନ ଘୋଡେଇ ସାରିଲେଣି । 'ଆପଣ ଅନେକ ଅନେକ ଦିନ ବଞ୍ଚନ୍ତୁ ସାଥୀ ମଜୁମଦାର !' 'ତୁମେ ବିପ୍ଳବୀ, ତୁମକୁ ଆମେ ଭୁଲି ପାରିବୁନି !'' ବସ୍ତିର କିଶୋରମାନଙ୍କୁ ହତ୍ୟା କରିଥିବା ନିଷ୍ଠୁର ଘାତକମାନଙ୍କୁ କ୍ଷମା ନାହିଁ ।' ପୁରୁଣା ଲେଖା ନିଷ୍ତ୍ରିଭ-ବିଜୟୀର ବନ୍ଦନାରେ ନୂଆ ଲେଖାମାନ ଶୋଭା ପାଉଛି ।

ଏବେ ଆଉ କେଉଁ ଅର୍ଦ୍ଧମୃତ ଯୁବକ ଗଳା ଫଟେଇ ସ୍ଲୋଗାନ ଦିଏ ନାହିଁ । ଦୀର୍ଘ ଅଢ଼େଇ ବର୍ଷର ସେ ବିଶୃଙ୍ଖଳା, ଯାହା ଏଠାକାର ଜୀବନର ସୁଶୃଙ୍ଖଳ ନିୟମକୁ ବିପର୍ଯ୍ୟସ୍ତ କରି ଦେଇଥିଲା; ତା'ର ଆଉ ଚିହ୍ନବର୍ଣ୍ଣ ନାହିଁ ।

ସୁଖୀ ଓ ଶାନ୍ତିପ୍ରିୟ ପରିବାରମାନେ ପୁଣିଥରେ ଏଠାକୁ ଫେରି ଆସିଛନ୍ତି । ଏବେ ଦେଖିବାକୁ ମିଳେ ଚାଉଳର ଚୋରା କାରବାର । ଅହୋରାତ୍ର ସିନେମା ହଲ୍‌ରେ ଭିଡ । ବାବାଜୀ ଓ ମହନ୍ତମାନଙ୍କ ଦଖଲରେ ଥିବା ମନ୍ଦିର ସମ୍ମୁଖରେ ମୁକ୍ତିକାମୀ ଜନତାର ପ୍ରବଳ ସମାଗମ ।

ସେଦିନର ସେହି ଘାତକମାନେ ଏବେ ଚେହେରା ବଦଳେଇ ନୂଆ ପରିଚୟରେ ନିର୍ଭୟରେ ଘୁରି ବୁଲନ୍ତି । ଗୋଟାଏ ଅଧ୍ୟାୟର ଯେମିତି ପୂର୍ଣ୍ଣଚ୍ଛେଦ ପଡ଼ିଛି । ବର୍ତ୍ତମାନ ମହୋପନ୍ୟାସର ନୂଆ ଅଧ୍ୟାୟର ଆରମ୍ଭ ।

କେବଳ ଗଳି ରାସ୍ତାଗୁଡିକର ଛକ ମାନଙ୍କରେ ସ୍ମୃତିଫଳକ ଗୁଡିକ ଶରୀରର କ୍ଷତଚିହ୍ନପରି ଠିଆ ହୋଇଛନ୍ତି । କିନ୍ତୁ ସେସବୁ ସ୍ମୃତିଫଳକରେ ସମୁ, ବିଜିତ୍ ,ପାର୍ଥ, ଲାଲ୍‌ଟୁ ଏମାନଙ୍କର ନାଆଁ ନାହିଁ । ବ୍ରତୀର ନାଆଁ ଥିବାର ପ୍ରଶ୍ନ ଉଠୁନାହିଁ । ହୁଏତ ଏମାନଙ୍କ ନାଆଁ କେବଳ କେତୋଟି ହୃଦୟରେ ବଞ୍ଚି ରହିଛି ।

ସମୁ ଘରେ ବସିଥିଲେ ସୁଜାତା । ବ୍ୟାଙ୍କ ଲକରରୁ ଗହଣା ଆଣିବା କାମ ଶେଷ । ଗହଣାଗୁଡା ତାଙ୍କ ବ୍ୟାଗ୍‌ରେ । ନୀପା, ବିନି, ତୁଲୀ ଓ ବ୍ରତୀର ଭାବି ସ୍ତ୍ରୀ ଏ ଚାରିଜଣଙ୍କ ପାଇଁ ଗୋଟେ ସମୟରେ ଗହଣାସବୁକୁ ଭାଗ ଭାଗ କରାଯାଇଥିଲା ।

ନୀପା ଓ ବିନିକୁ ଯାହା ଦବା କଥା ଦେଇ ଦେଇଛନ୍ତି ।

ତୁଲୀ କହେ-ବ୍ରତୀ ଭାଗ ଗହଣା ତାକୁ ହିଁ ଦିଆଯିବା ଉଚିତ୍ ।

ନୀପାର ଝିଅ,ଜ୍ୟୋତିର ପୁଅ ନାଁରେ କିଛିଟା ରଖି ବାକି ଗହଣାତକ ବୋଧେ ତୁଲୀକୁ ହିଁ ଦେଇଦେବେ । ସୁଜାତା ହାତର ଦି'ପଟ ବାଲା, କାନରେ ଫୁଲ ଓ ବେକରେ ସରୁ ହାରଟିଏ ଛଡ଼ା ଆଉ କିଛି ପିନ୍ଧି ନାହାଁନ୍ତି । ବ୍ରତୀ ଜନ୍ମ ହେବା ପରଠୁ ସେ ରଙ୍ଗୀନ ଶାଢ଼ୀ ପିନ୍ଧିବା ଛାଡ଼ି ଦେଇଛନ୍ତି ।

ବର୍ତ୍ତମାନ ସେ କ୍ଳାନ୍ତ, ସମ୍ପୂର୍ଣ୍ଣ ଭାଙ୍ଗି ପଡିଛନ୍ତି । ସମୁର ମା' ତାଙ୍କ ଆଗରେ ବସି ନୀରବରେ କାନ୍ଦୁଥିଲେ । ତାଙ୍କର ରୋଗିଣା, କଳା ମୁହଁଟି ଲୁହରେ ପୁରାପୁରି ଭିଜି ଯାଉଥିଲା ।

ଗୋଟେ ବର୍ଷ ଭିତିରେ ତାଙ୍କର ଚେହେରା ଆହୁରି ଜୀର୍ଣ୍ଣଶୀର୍ଣ୍ଣ ହୋଇଯାଇଛି । ପିନ୍ଧିବା ଲୁଗା ଖଣ୍ଡିକ ମଇଳା, ମୋଟା ଥାନକନା ।

ସମୁର ଘରଟା ଖୁବ୍ ଦଦରା । ଚାଳ ଠାଏ ଠାଏ କଣା, କାନ୍ଥସବୁ ଭଙ୍ଗାରୁଜା ଓ କାର୍ଡବୋର୍ଡରେ ଢ଼ଙ୍କା । ତଥାପି ଆଜିକୁ ଦୁଇବର୍ଷ ଧରି କେବଳ ଏଠାକୁ ଆସିଲେ ସୁଜାତା ଖୁବ ଶାନ୍ତି ପାଆନ୍ତି । ମନେ ହୁଏ ଯେମିତି ସେ ନିଜ ଭିଟାମାଟିକୁ ଆସିଛନ୍ତି ।

ସୁଜାତାଙ୍କୁ ପ୍ରଥମ ଥର ଦେଖି ସମୁର ବଡ ଭଉଣୀ କାନ୍ଦି ପକେଇଥିଲା । ଏଥର କିନ୍ତୁ ସେ ଭ୍ରୁ କୁଞ୍ଚିତ କରି ତାଙ୍କୁ ଅନେଇଲା । ସମୁର ମୃତ୍ୟୁପରେ ତା' ବାପାଙ୍କର ଦେହାନ୍ତ ହୁଏ । ସେହି ଦିନଠାରୁ ସମୁର ଏହି ବଡ଼ଭଉଣୀ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ପିଲାମାନଙ୍କୁ ଟିଉସନ କରି ସଂସାରର ଯାବତୀୟ ଭଲମନ୍ଦ ବୁଝିଛି । ଚିତାଗ୍ନିରେ ଶରୀରର ଚର୍ବି ଅଂଶସବୁ ପୋଡିଯାଏ କିନ୍ତୁ ସଂସାର ଅଗ୍ନିରେ ସମୁର ଭଉଣୀ ଜଳି ପୋଡି ସମ୍ପୂର୍ଣ୍ଣ ଦଗ୍ଧ ହୋଇ ଯାଇଛି । ଏବେ ତା ଆଖିରେ କ୍ରୋଧ ଓ ମୁହଁରେ କଠୋର ଭାବ । ସମୁ ବାସ୍ତବରେ ତାକୁ ମୁମୂର୍ଷୁ ଅବସ୍ଥାରେ ଛାଡିଯାଇଛି । ସମୁ ଏ ଘରର ଏକମାତ୍ର ପୁଅ ଥିଲା । ତେଣୁ ସେ କଲେଜରେ ପଢ଼ିବ ବୋଲି ସମୁର ଏହି ବଡ଼ ଭଉଣୀକୁ ତା'ର ବାପା ପଢ଼ା ଖର୍ଚ୍ଚ ଦେଉ ନଥିଲେ । ସେ ପିଲାଙ୍କୁ ଟିଉସନ କରି ତା'ର ପଢ଼ାଖର୍ଚ୍ଚ ଚଳାଉଥିଲା ।

ସୁଜାତାଙ୍କୁ ରୁକ୍ଷ ଆଖିରେ ଅନେଇ କୌଣସି କଥା ନକହି ସମୁର ଭଉଣୀ ସେଠୁ ବାହାରି ଗଲା । ସୁଜାତା ବୁଝିଲେ ସେ ହିଁ ବର୍ତ୍ତମାନ ଘର ସଂସାରର କର୍ତ୍ତ୍ରୀ । ସେ ଆଉ ଚାହେଁନି ସୁଜାତା ତା'ର ଭାଇ କଥା ମନେ ପକେଇ ଦବାକୁ ପ୍ରତିବର୍ଷ ଏଠାକୁ ଆସନ୍ତୁ । ଖୁବ୍ ଅସହାୟ ମନେ କଲେ ନିଜକୁ । ତା ଆଡକୁ ସୁଜାତା ବିକଳ ହୋଇ ଚାହିଁଲେ । କହିବାକୁ ଇଚ୍ଛା ହେଲା, ଏହି ଯିବା ଆସିବା ଦ୍ୱାର ବନ୍ଦ ନକରିବା ପାଇଁ । କିନ୍ତୁ କହିପାରିଲେନି । ସମୁର ଭଉଣୀ ବାହାରି ଗଲା ।

ସମୁର ମା' କାନ୍ଦୁଥିଲେ । ସୁଜାତା ଚୁପ୍ ହୋଇ ବସିରହିଥିଲେ ।

- ତୁ ଅଯଥାରେ କାହିଁକି କାନ୍ଦୁଛୁ ମା ! ସେ କ'ଣ ଆଉ ଫେରି ଆସିବ ?

- ତୁମେ ତଥାପି ଭଲରେ ଅଛ ଭଉଣୀ । ପାର୍ଥର ମା'କୁ ଦେଖ । ପାର୍ଥକୁ ଅକାଳରେ ହରେଇଲା । ପୁଣି ପାର୍ଥ ଭାଇ ଏ ଅବସ୍ଥାରେ ମଧ୍ୟ ଘରକୁ ଆସିପାରିବ ନାହିଁ । ଯାଇ ରହିଛି ତା' ମାଉସୀ ଘରେ; କାହିଁ କେତେ ଦୂରରେ ।

- ଏଯାଏଁ ଫେରିନି ?

- ନାଁ ଭଉଣୀ, ଯେଉଁମାନେ ମରିଗଲେ ସେମାନେ ଥରକରେ ତରିଗଲେ । ଯେଉଁମାନେ ଜୀବନଟିକକ ଧରି ରହିଲେ, ସେମାନେ ମଧ୍ୟ କେତେବେଳେ ହେଲେ ଘରକୁ ଫେରି ପାରିବେନି । ବିଧିର ଏ କି ବିଚିତ୍ର ବିଧାନ ଭଉଣୀ ?

ସମୁର ମା' କାନ୍ଦିବାକୁ ଲାଗିଲେ ।

ପ୍ରଥମ ଥର ବର୍ଷେ ପୂରିବା ଦିନ ଏଠିକି ଆସିବା ପୂର୍ବରୁ ଖୁବ୍ ବ୍ୟତିବ୍ୟସ୍ତ ହୋଇଥିଲେ ସୁଜାତା । ସମୁର ମା' ସେତେବେଳେ ସଦ୍ୟ ବିଧବା ହୋଇଥାନ୍ତି । ଏ ବସ୍ତିରେ ପ୍ରବେଶ କରି ସମୁର ନାଁ ପଚାରିବାରୁ ଏଠିକା ଲୋକେ, ବସ୍ତିର ପିଲାମାନେ ତାଙ୍କ ଆଡ଼କୁ ଆଶ୍ଚର୍ଯ୍ୟ ହୋଇ ଚାହିଁଥିଲେ । ପ୍ରଥମେ ତ କେହି କିଛି କହିବାକୁ ଚାହିଁଲେ ନାହିଁ । ଶେଷରେ ଅବଶ୍ୟ ଜଣେ କେହି କହିଥିଲା-ଦେଖନ୍ତୁ ଆଜ୍ଞା ! ସେହି ଘର ।

ସୁଜାତାଙ୍କ ଧଳା ଦାମୀ ଶାଢ଼ୀ, ଆଭିଜାତ୍ୟପୂର୍ଣ୍ଣ ଚେହେରା, କଞ୍ଚା ପାଚିଲା କେଶଯୁକ୍ତ ପ୍ରୌଢ଼ ମୁଖମଣ୍ଡଳ । ଏସବୁ ଦେଖି ସମୁର ମା ଚକିତ ହୋଇ ବଲବଲ କରି ତାଙ୍କୁ ଚାହିଁଥିଲେ ।

- ମୁଁ ବ୍ରତୀର ମା' ।

ଏହି କଥା ପଦକ ଶୁଣୁଶୁଣୁ 'ସମୁ'ରେ ! କହି ଭଦ୍ରମହିଳା ଭୋ ଭୋ ହୋଇ କାନ୍ଦି ଉଠିଥିଲେ । ସୁଜାତାଙ୍କୁ ଜାବୁଡି ଧରିଥିଲେ ସେ । ଆପଣଙ୍କ ପୁଅ । ଆହା ବିନା କାରଣରେ ଜୀବନ ଗଲା ତା'ର ଭଉଣୀ । ସେ ତ ସମୁ ପ୍ରଭୃତିଙ୍କୁ ସାବଧାନ କରିବାକୁ ଆସିଥିଲା । ସେମାନେ ଜାଣିଗଲେ ଯେ ସମୁ ଓ ଅନ୍ୟ ଚାରିଜଣଯାକ ବସ୍ତିକୁ ଆସିଛନ୍ତି ଓ ରାତି ପାହିବା ପର୍ଯ୍ୟନ୍ତ ସେମାନଙ୍କୁ ସମୟ ଦଆଯିବନି । ଯେତେବେଳେ ବ୍ରତୀ ଆସି ପଚାରିଲା, 'ସମୁ କେଉଁଠି ' ? ମୁଁ ବାଁରେଇ ଦେଇ କହିଲି, ରାତିରେ କଲୋନୀ ଦେଇଯିବା ଠିକ୍ ନୁହେଁରେ ପୁଅ । ରାତିଟା ଏଠାରେ ରହିଯା । ବଡିଭୋରରୁ ଚାଲଯିବ । ରାତି କ'ଣ କଟିଲା ? ସେଦିନ ଭଉଣୀ ଏଠାରେ ମୋର ଏହି ଛୋଟ ଘରେ ସମୁ ,ପାର୍ଥ ଆଉ ବ୍ରତୀ ପରସ୍ପରକୁ କୁଣ୍ଢାଇ ଶୋଇଲେ ।

- କେଉଁ ଘରେ ?

- ଏହି ଘରେ । ଆଉ ଘର କାହିଁ ଭଉଣୀ । ସାନ ଦି' ଭଉଣୀଙ୍କୁ ନେଇ ବଡ଼ ଝିଅ ଗଲା ବାଉଁଶ ତାଟି ଘେରା ଭିତରପଟ ବାରଣ୍ଡାକୁ । ଅଉ ଏ ଘରେ ରହିଲେ ସେମାନେ । ମୁଁ ଯାଇ ଝରକା ପାଖରେ ଅନିଶା କରି ବସିଲି । କିଏ ଆସିଲେ ଦେଖିବି ବୋଲି ।

- ବ୍ରତୀ ଏଇଠି ଥିଲା ?

- ହଁ ଭଉଣୀ । ମୋ ସ୍ୱାମୀ ଥିଲେ ନିତାନ୍ତ ଗରିବ ଦୋକାନୀ । ବଜାରର କଣ ପଟକୁ ଖାତା ପେନ୍‌ସିଲ ଓ ସିଲଟର ଦୋକାନ ଥିଲା । ଏହି ଘର ଖଣ୍ଡିକ ତୋଳି ନୟାନ୍ତ ହୋଇଥିଲେ । ସେଦିନ ପିଲାଏ ଏହି ଘର କଣରେ ରହିଲେ, ସମୁର ବାପା ମଧ୍ୟ ସାରା ରାତି ଚେଇଁଛନ୍ତି । ଭୋର ହେଉ ନହେଉଣୁ ଯେପରି ସେମାନଙ୍କୁ ଉଠାଇ ଦେବେ । ଏହି କଣରେ ମୋର ଛିଣ୍ଡା ମଶିଣା ଉପରେ ଶୋଇ ସେମାନଙ୍କର କେତେ କଥା; କେତେ ହସ । ବ୍ରତୀର ହସ ଏଯାଏ ମୋ ଆଖି ଆଗରେ ଭାସି ଯାଉଛି । ସୁନାରକାନ୍ତି ରୂପ ଆପଣଙ୍କ

ପୁଅର ।

- ବ୍ରତୀ ଏଠାକୁ ଆସୁଥିଲା ?

- କେତେଥର ଆସିଛି । ଆସୁଥିଲା ଆଉ ଡାକି ବରାଦ କରୁଥିଲା 'ପାଣି ଦିଅ, ମାଉସୀ ଚା' ଦିଅ ।' ଚା' ପିଉଥିଲା, ଖୁସିଗପ କରି ସମୟ କଟାଉଥିଲା ।

ସମୁର ମା', ସେମାନଙ୍କ ଘର, କାନ୍ଥରେ ଟଙ୍ଗା ହୋଇଥିବା କ୍ୟାଲେଣ୍ଡରର କଟାଛବି, ନାଡ ଭଙ୍ଗା ଚା'କପ ଏସବୁକୁ ଯେମିତି ନୂଆକରି ସୁଜାତା ଦେଖିଲେ ।

ବ୍ରତୀ, ତାଙ୍କ ରକ୍ତର ରକ୍ତ, ଯାହାକୁ ଜନ୍ମ ଦେବାକୁ ଯାଇ ତାଙ୍କର ପ୍ରାଣ ସଙ୍କଟାପନ୍ନ ହୋଇଥିଲା, ଯିଏ ତାଙ୍କ ନିକଟରେ କ୍ରମଶଃ ଦୁର୍ବୋଧ ହୋଇ ଯାଉଥିଲା, ଯିଏ ସଂପୂର୍ଣ୍ଣ ଅଚିହ୍ନା ହୋଇଯାଉଥିଲା ; ସେହି ବ୍ରତୀ ସହିତ ଯେପରି ସୁଜାତାଙ୍କ ନୂଆ କରି ପରିଚୟ ଆରମ୍ଭ ହେଲା, ସେହି ମୁହୂର୍ତ୍ତରୁ ।

ବ୍ରତୀକୁ ସେ ତ ସ୍ୱପ୍ନରେ କେତେଥର ଦେଖିଛନ୍ତି । ନୀଳରଙ୍ଗର ସାର୍ଟଟିଏ ପିନ୍ଧିଛି, ମୁଣ୍ଡ କୁଣ୍ଡାଉଛି ।

ତାଙ୍କ ଆଡକୁ ଚାହିଁ ରହିଛି ବ୍ରତୀ ।

ତାଙ୍କୁ ଗଭୀର ଅଭିନିବେଶରେ ଦେଖି ନେଉଛି ।

କେତେକେତେ ବିନିଦ୍ର ରାତ୍ରି, ଶେଷରେ ଯେତେବେଳେ କେବଳ ଶାରୀରିକ କ୍ଲାନ୍ତିରେ ଅବସନ୍ନ ସୁଜାତାଙ୍କ ଆଖି ପତାକୁ ପରାଜିତ କରି ନିଦ୍ରା ଓହ୍ଲେଇ ଆସେ, ସେତେବେଳେ ସିଡି ତଳୁ ତାଙ୍କୁ ସେମିତି ତୀକ୍ଷ୍ଣ ଗଭୀର ଦୃଷ୍ଟିରେ ବ୍ରତୀ ଚାହିଁ ରହିଥାଏ । ସୁଜାତା ବାରଣ କରନ୍ତି, ବ୍ରତୀ ତୁ ଯା'ନା । ବ୍ରତୀ ସେମିତି ଚାହିଁ ରହିଥାଏ । ସୁଜାତା ଡାକନ୍ତି-ଆ ବ୍ରତୀ ଉଠିଆ । ବ୍ରତୀ କେବଳ ଚାହିଁ ରହିଥାଏ । ପଦଟିଏ କଥା କହେନି । ତା' ଓଠରେ ହସ-ଟିକିକ ମଧ୍ୟ ସେତେବେଳେ ନଥାଏ ।

କିନ୍ତୁ ଏଠି ବ୍ରତୀ କଥା କହୁଥିଲା, ହସୁଥିଲା, କହୁଥିଲା ମାଉସୀ ଚା' କରନ୍ତୁ । ହଁ ଆଗେ ପାଣି ଗିଲାସେ ଦିଅନ୍ତୁ ।

ସମୁର ମା' କହିଥିଲେ, ମୁଁ କହୁଥିଲି-ତୁ କେଉଁ ଦୁଃଖରେ ଏମିତି ସବୁ ଜଳାଞ୍ଜଳି ଦେଉଛୁ ? କ'ଣ ନାହିଁ ତୋ'ର ? ପ୍ରତିଷ୍ଠିତ ବାପା, ବିଦୁଷୀ ମା' । ସେ କିଛି କହୁ ନଥିଲା । ଖାଲି ହସୁଥିଲା । ଭଉଣୀ ତା' ଓଠର ହସ ଟିକକ ମୁଁ ଜମା ଭୁଲି ପାରୁନି ।

ସେହି ମୁହୂର୍ତ୍ତରେ ସୁଜାତାଙ୍କ ମନରେ ଶକ୍ତ ଧକ୍‌କା ଲାଗିଥିଲା । ବ୍ରତୀର ହସ,ସେହି ଆଶ୍ଚର୍ଯ୍ୟ ସୁନ୍ଦର ହସ ! ସେ ଭାବିଥିଲେ ସବୁ ସ୍ମୃତି କେବଳ ତାଙ୍କ ନିଜର । ବ୍ରତୀ ସମୁ ମା'ର ହୃଦୟରେ ଯେ ମେଞ୍ଚାଏ ସ୍ମୃତି ରଖିଯାଇଛି, ସେ ଜାଣିପାରିଲେନି କେମିତି ? ବ୍ରତୀ

ସେଦିନ ଘରେ ଥିଲା । ତିନି ମହଲାରେ ସାରାଦିନ ବସି ବସି କ'ଣ ଗୁଡାଏ ଲେଖିଥିଲା । ପରେ ସୁଜାତା ଦେଖିଛନ୍ତି କାନ୍ଥ ଲେଖା ପାଇଁ ସ୍ଲୋଗାନସବୁ । ପୋଲିସ୍ ଘର ଖାନତଲାସ କଲାବେଳେ ସେ ସମସ୍ତ କାଗଜ ସେମାନଙ୍କ ସାଙ୍ଗରେ ନେଇ ଯାଇଥିଲେ । ବର୍ତ୍ତମାନ ସେସବୁ ଆଉ ଘରେ ନାହିଁ ।

ବର୍ତ୍ତମାନ ଘରେ ଅଛି, ବ୍ରତୀର ସ୍କୁଲ ଓ କଲେଜ ପଢ଼ା ବହି ଖାତା, ପ୍ରାଇଜ୍ ବହି, ସୁନା ମେଡାଲ, ଦାର୍ଜିଲିଂରେ ବନ୍ଧୁମାନଙ୍କ ଗହଣରେ ଉଠେଇଥିବା ଫଟୋ, ଦୌଡିବା ପାଇଁ ଯୋତା ଓ ଖେଳରେ ପାଇଥିବା କପ୍ । ବ୍ରତୀର ଜୀବନର କେତେଟା ବର୍ଷର ସ୍ମାରକୀ । ସବୁ ମନେ ଅଛି ସୁଜାତାଙ୍କର ,'ମା' ମୁଁ ପ୍ରାଇଜ୍ ପାଇବି, ତୁମେ ଯିବନି ?' ପୁଣି ସାହିର ପାର୍କକୁ ଯାଇ ଯୁବକ ସଂଘରେ ଭର୍ତ୍ତିହେବା । ଗର୍ବର ସହ ପିଲାମାନଙ୍କ ସାଙ୍ଗେ ଡ୍ରମ ଓ ବିଗୁଲ ବଜେଇ ସ୍ୱାଧୀନତା ଦିବସରେ ରାସ୍ତା ଉପରେ ମାର୍ଚ୍ଚ କରିବା । ଫୁଟ୍‌ବଲ୍ ଖେଳରେ ଜିତି କପ୍ ଆଣିଥିଲା; କିନ୍ତୁ ଗୋଡ଼୍ ଭାଙ୍ଗି ଆସିଥିଲା । ସୁଜାତାଙ୍କର ଏ ସବୁ ସ୍ମୃତି ଜୀବନ୍ତ ।

ଯେଉଁ ସମୟରୁ ସେ ବଦଳି ଯିବାକୁ ଆରମ୍ଭ କଲା; ସେହି ପ୍ରାୟ ବର୍ଷକର ବହି, କାଗଜ, ଇସ୍ତାହାର, ବିପ୍ଳବର ଆହ୍ୱାନ ଲେଖା କାଗଜ, ପତ୍ରିକା ଏସବୁ କିଛି ଆଉ ଘରେ ନାହିଁ । ସବୁକିଛି ସେମାନେ ପୋଛି ନେଇ ଯାଇଛନ୍ତି । ସୁଜାତା ପରେ ଶୁଣିଛନ୍ତି ସେସବୁକୁ କୁଆଡେ ଜଳେଇ ଦିଆଗଲା ।

ସାରାଦିନ ବ୍ରତୀ ଘରେ ଥିଲା । ସୁଜାତା ବ୍ୟାଙ୍କ୍‌ରୁ ଫେରି ତାକୁ ଘରେ ଦେଖି ଖୁବ୍ ଆଶ୍ଚର୍ଯ୍ୟ ହୋଇଥିଲେ । ପରେ ଜାଣିବାକୁ ପାଇଲେ ଯେ ସେ ଗୋଟିଏ ଟେଲିଫୋନ ଖବରକୁ ଅପେକ୍ଷା କରିଥିଲା । ସେ ଜାଣିଥିଲା ଯେ ସମୁ ପ୍ରଭୃତି ଫେରିଯିବେ । କିନ୍ତୁ ସମୁ ଓ ତା ସାଥୀମାନଙ୍କୁ ଫେରିଯିବାକୁ ନିଷେଧ କରିଦିଆଯାଇଛି । ସମୁ ଓ ତାର ସାଥୀମାନଙ୍କୁ ନିଷେଧ କରିବା ଦାୟିତ୍ୱ ଯାହାର ଥିଲା, ସେ ଯେ ସେମାନଙ୍କ ପାଖକୁ ନଯାଇ ବସ୍ତିରେ ଖବର ଦେବ, ଏହି କଥା ବ୍ରତୀ ବୁଝି ପାରି ନଥିଲା । ଅବଶ୍ୟ ଫୋନ୍‌ଟି ପାଇ ବୁଝିଥିଲା ଯେ ଯାହା ସର୍ବନାଶ ହେବାର ହୋଇଯାଇଛି ।

ଏହିଭଳି ମରିଥିଲେ ସେମାନେ, ଅନେକଙ୍କୁ ବିଶ୍ୱାସ କରି । ଯେଉଁମାନଙ୍କୁ ସେମାନେ ବିଶ୍ୱାସ କରିଛନ୍ତି ସେମାନଙ୍କ ମଧ୍ୟରୁ କାହା ପାଇଁ ଖଣ୍ଡେ ଛୋଟ ଚାକିରି, ସାମାନ୍ୟ ନିରାପତ୍ତା, ସୁଖମୟ ଜୀବନର ପ୍ରଲୋଭନ ଯେ ବଡ ହୋଇପାରେ ବ୍ରତୀ ଏକଥା ବୁଝିପାରି ନଥିଲା । ସେ ଜାଣି ପାରି ନଥିଲା ଯେ ପ୍ରଥମରୁ ଅନେକେ କେବଳ ସେମାନଙ୍କ ସହ ବିଶ୍ୱାସଘାତକତା କରିବା ପାଇଁ ଦଳରେ ସାମିଲ ହୋଇଥିଲେ । ବ୍ରତୀର ବୟସ କମ୍ ଥିଲା । କେବଳ ଗୋଟେ ବିଶ୍ୱାସ ତାକୁ ତଥା ତାହାର ବନ୍ଧୁମାନଙ୍କୁ ଅନ୍ଧ କରି ଦେଇଥିଲା । ସେମାନେ ଏକଥା ମଧ୍ୟ ବୁଝି ନଥିଲେ ଯେ ଯେଉଁ ବ୍ୟବସ୍ଥା ପାଇଁ ସେମାନଙ୍କର ଏ ଲଢ଼େଇ, ସେ ବ୍ୟବସ୍ଥା ଅନେକଙ୍କୁ

ଜନ୍ମ ପୂର୍ବରୁ ଭ୍ରୁଣ ଅବସ୍ଥାରେ ହିଁ ବିଷାକ୍ତ କରି ଗଢ଼ି ତୋଳେ । ସବୁ ତରୁଣ ଆଦର୍ଶରେ ଦୀକ୍ଷିତ ନୁହଁନ୍ତି । ସମସ୍ତେ ଯେ ମୃତ୍ୟୁକୁ ଭୟ କରନ୍ତିନି, ଏମିତି ନୁହେଁ । ଏ ସରଳ କଥାଗୁଡା ବ୍ରତୀ ଓ ତାର ସାଥୀମାନେ ଜାଣି ନଥିଲେ । ସେହି କାରଣରୁ ବ୍ରତୀ ଭାବି ନେଇଥିଲା ଖବର ଯାଇଛି ଯେତେବେଳେ ସମ୍ଭୁ ପ୍ରଭୃତି ନିଶ୍ଚୟ ସତର୍କ ହେବେ । ତା'ଛଡା ସେ ଟେଲିଫୋନ୍‌ରେ ମଧ୍ୟ ଜଣେଇବ ଯେ ସବୁ ଠିକ୍ ଠାକ୍ ଅଛି ।

ଯେତେବେଳେ ସାରା ଦିନଟା ବିତିଗଲା, ସନ୍ଧ୍ୟା ହେଲା; ଶୀତ ସନ୍ଧ୍ୟା ପୁଣି କଲିକତାକୁ ଖୁବ୍ ଶୀଘ୍ର ଆସେ । ସେତେବେଳେ ବ୍ରତୀ ଭାବିଥିଲା ଖବର ଯଦି ଆସିବାର ଥାଆନ୍ତା, ତା'ହେଲେ ଆସି ସାରନ୍ତାଣି । ଦି'ପହର ଯାଏ ଯେତେବେଳେ ଫୋନ୍ ଆସିଲାନି ସେତେବେଳେ ତା' ମନରେ ସନ୍ଦେହ ଜନ୍ମିଥିଲା । କ୍ରମେ ଦି'ପହର ଗଡି ସନ୍ଧ୍ୟା ହେଲା । ସୁଜାତା ଫେରି ଆସିଲେ ।

- କିରେ, ଆଜି ବାହାରକୁ ଯାଇନୁ ?

- ନା ।

- କାହିଁକି ?

- କାହିଁକି ମାନେ, ଏମିତି । ଚାଲ ଚା' ପିଇବା ।

ଏକା ସାଙ୍ଗରେ ଚା' ପିଇଲେ ସୁଜାତା, ବ୍ରତୀ ବସିଥିଲା କବାଟକୁ ପଛକରି । ତା' ଦେହରେ ଥିଲା ଗୋଟେ ପୁରୁଣା ଶାଲ୍ । ଅନେକ ଦିନର ଶାଲ୍ । ନୀଳ ରଙ୍ଗର ପୁରୁଣା ଜୀର୍ଣ୍ଣ ଶାଲ୍-ଶୀତ ହେଲେ ବ୍ରତୀ ସେଇଟିକୁ ଘୋଡ଼ି ହୋଇ ଘରେ ରହୁଥିଲା । ସୁଜାତା ତାକୁ କହନ୍ତି, 'ସେଇଟାକୁ କାଢ଼ି ଆଉ ଭଲ ଖଣ୍ଡେ ଘୋଡ଼େଇ ହୋ ।

ବ୍ରତୀ କହୁଥିଲା, ସେହିଟିକୁ ଘୋଡ଼େଇ ହେଲେ ବେଶ୍ ଉଷୁମ ଲାଗେ । ସେହି ଶାଲ୍‌ଟା ଦେହରେ, ଅଲରା କେଶ, ବ୍ରତୀ ପଛରେ ଦୁଆରଟା ହାଁ ମେଲା । ଖୋଲା ଦରଜା ଦେଇ ଦେଖାଯାଏ ଅଗଣାପଟ ପାଚେରୀ, ପାଚେରୀକୁ ଲାଗି ବାସନମଜା ଜାଗା ।

ଚା' ପିଇବା ସମୟରେ ବ୍ରତୀ ଅନେକଦିନ ପରେ ବିନି ସହିତ ଥଟ୍ଟା ତାମ୍‌ସା କରୁଥିଲା । କିଛିଦିନ ପୂର୍ବରୁ ସେ ବନ୍ଧୁମାନଙ୍କ ସହ ଦୀଘା ଯାଇଥିଲା । ପରେ ସୁଜାତା ଜାଣିଲେ ଯେ ସେ ଦୀଘା ଯାଇ ନଥିଲା । ଖଡ଼ଗପୁର ଷ୍ଟେସନରେ ପୋଲିସ୍ କୁଆଡ଼େ ଧରପଗଡ଼ କରୁଥିଲେ । ଦୀଘା ରାସ୍ତାରେ ବସ୍ ଅଟକାଇ ହେଲମେଟ୍ ପିନ୍ଧା ମିଲିଟାରୀ ପୋଲିସ୍ ଟର୍ଚ୍ଚ ପକେଇ ପ୍ରତ୍ୟେକ ଯାତ୍ରୀଙ୍କର ମୁହଁ ଦେଖୁଥିଲେ । କୌଣସି କୌଣସି ଗାଁ ରାସ୍ତାରେ ବସ୍ ଗଲାବେଳେ ଧୀର ଗତିରେ ଯିବାକୁ ବାଧ୍ୟ କରାଯାଉଥିଲା । ରାସ୍ତାର ଦୁଇ ପଟେ ଅନ୍ଧକାର ଭିତରେ ବନ୍ଧୁକ ଉଞ୍ଚେଇ ସେମାନେ ପହରା ଦେଉଥିଲେ । ବ୍ରତୀ ଦୀଘା ଯାଇନଥିଲା ।

ସୁଜାତା ସେ ପର୍ଯ୍ୟନ୍ତ ସବୁ କଥା ଜାଣି ନଥିଲେ । ବିନି ମଧ୍ୟ ଜାଣି ନଥିଲା । ବିନି

ତା'କୁ ଦୀଘା କଥା ପଚାରୁଥିଲା । ବ୍ରତୀ କହିଲା-ଦୀଘା ଗୋଟେ ବାଜେ ଜାଗା । ସେଠି ରହିବା ଖାଇବାରେ କିଛି ସୁବିଧା ନାହିଁ ।

- ଆହା, ମୋ ମାଉସୀ ଝିଅ ଭଉଣୀ ଯାଇଥିଲା । ସେ ତ ଏକଥା କିଛି କହିନି ?

- ତୁମ ଭଉଣୀ ତ ?

- ଆଉ ତୁମର କ'ଣ ସେ ଅଚିହ୍ନା ? ତୁମ ପ୍ରାଣର ବନ୍ଧୁ ଦୀପକ ସହ ସେ ଟେନିସ୍ ଖେଳେ, ତୁମେ ଜାଣନା ? ଖୁବ୍ ତ ଆଡ୍‌ଡା ମାରିବାକୁ ଦୀପକ ଘରକୁ ଯାଅ ।

- ମୁଁ କ'ଣ ତୁମ ଭଉଣୀକୁ ଚିହ୍ନିଚି ?

ସୁଜାତା କହିଲେ, ଯଦି ବା ଚିହ୍ନିନୁ, ଯେତେବେଳେ ଯାଇଥିଲୁ ସେତେବେଳେ ତାକୁ ଦେଖିଥିବୁ ?

- କାହିଁକି ?

- ଖୁବ୍ ସୁନ୍ଦର ସେ ।

- କ'ଣ ଯେ କୁହ ? ତୁମଠାରୁ ସୁନ୍ଦର ?

ବିନି କହିଲା-ମା, ବ୍ରତୀ ତୁମକୁ ତେଲ ମାରୁଚି । ନିଶ୍ଚୟ ତା'ର କିଛି ମତଲବ ଅଛି ।

- ବିନି ତୁ ଯେ କ'ଣ କହୁ । ତାର କ'ଣ ସିନେମା ଦେଖିବା ପାଇଁ ଏବେ ଟଙ୍କା ଦରକାର ହୁଏ ? ନା ହାତଖର୍ଚ୍ଚ ପାଇଁ ? ମା'କୁ ଖୁସି କରେଇବା ପାଇଁ ତା'ର କିଛି ଆବଶ୍ୟକତା ନାହିଁ । ଏପରିକି ମା' ମଧ୍ୟ ନୁହେଁ ।

- ଏମିତି କ'ଣ କହିଲ ମା' ?

ବିନି କହିଲା, ମା' ତମେ ନିତାନ୍ତ ବୋକୀ ! ସେ ନ୍ୟାସନାଲ୍ ସ୍କଲାରସିପ୍ ଟଙ୍କା ଯେତେବେଳେ ପାଉଥିଲା ମୁଁ ହୋଇଥିଲେ ସେ ଟଙ୍କାକୁ ତା ଠାରୁ ନିଜ ହାତକୁ ନେଇଥାନ୍ତି ।

- ଏତେ ସହଜ ନୁହେଁ ଭାଉଜ । ଭାଇଙ୍କୁ ପଚାରି ଦେଖ ।

- କାହିଁକି, ଭାଇଙ୍କୁ ପଚାରିବି କାହିଁକି ?

- ଭାଇ ବଡ଼ ସରଳ । ହାତଖର୍ଚ୍ଚତକ ସବୁ ବାଜେ ଖର୍ଚ୍ଚ କରି ଦେଉଥିଲେ । ମୋ ବ୍ରତଭିକ୍ଷା ଟଙ୍କାରୁ ତାଙ୍କୁ ମୁଁ ଧାର ଦେଉଥିଲି । କିନ୍ତୁ ଟଙ୍କାକୁ ଟଙ୍କାଏ ସୁଧ ଆଦାୟ କରୁଥିଲି ।

ସୁଜାତାଙ୍କର ହଠାତ୍ ମନେ ହେଲା ବ୍ରତୀ ତାଙ୍କ କଥା ଏଡ଼େଇ ଯାଉଛି । ସେ କହିଥିଲେ, ମା' କେବେ ତୋର ଦରକାର ବୋଲି ମନେ କରୁ ? ମା' କଥା ତୋର କଣ ମନେ ପଡ଼େ ? କେବେ ମା' କଥା ବୁଝିବାକୁ ଚେଷ୍ଟା କରିଛୁ ? ଦିନ ନାହିଁ ରାତି ନାହିଁ; ଖାଲି ପଦାକୁ ବାହାରିଯାଉ । କହୁ ଅନେକ କାମ ଅଛି ।

- କାମ ଥାଏ ଯେ ?

- ବାପ୍‌ରେ ବାପ୍ ! ଏବେଠୁ ଏତେ କାମ ? ତୁମ ଭାଇଙ୍କ ଭଳି ଯେତେବେଳେ ଗୁରୁତ୍ୱପୂର୍ଣ୍ଣ କାମ ହାତକୁ ନେବ, ସେତେବେଳେ କ'ଣ ହେବ ?

ବ୍ରତୀ କହିଥିଲା, ମୁଁ ସେଭଳି କାମ କରେନି ବୋଲି ତମକୁ କିଏ କହିଲା ?

- ଗୁରୁତ୍ୱପୂର୍ଣ୍ଣ କାମ ଅର୍ଥ କ'ଣ ଗୁଲିଖଟି ଗପ ।

- ଗୁଲିଖଟି କରିବା ସେ ପର୍ଯ୍ୟାୟ କାମ ନୁହଁ ?

- ଜାଣେ । ଆହୁରି ବି ଗୋଟେ କଥା ଜାଣେ ।

- କ'ଣ ଜାଣ ?

- ନନ୍ଦିନୀ ସହ ଆଡ୍‌ଡା ମାରିବା ସବୁଠୁ ଗୁରୁତ୍ୱପୂର୍ଣ୍ଣ କାମ !

- ନନ୍ଦିନୀ ସହ ଆଡ୍‌ଡା ମାରେ, ତୁମକୁ ଏକଥା କହିଲା କିଏ ?

- କିଏ ଆଉ କହିବ ? ମୁଁ ମଝିରେ ମଝିରେ ନନ୍ଦିନୀର ଫୋନ୍ ଧରେ, ସେଥିରୁ ଜାଣେ... ।

ବ୍ରତୀ ମୃଦୁ ମୃଦୁ ହସିଥିଲା । ନିଃଶବ୍ଦ ହସ ତାର । ତା'ର ଆଖି ଦି'ଟାରେ ହସ ମୁହଁଟା ଉଜ୍ଜ୍ୱଳ ଦିଶେ । ସବୁବେଳେ ଏମିତି ହସି ଅସମାହିତ ପ୍ରଶ୍ନର ଉତ୍ତର ଦେବା ପରିସ୍ଥିତିକୁ ଏଡ଼େଇ ଦେଉଥିଲା ।

- ମା' ଚାଲ ଉପର ଘରେ ବସି ଲୁଡୁ ଖେଳିବା ।

ବିନି ପୁଣି ଥରେ କହିଥିଲା, ମା' ଆଜି ବ୍ରତୀର ନିଶ୍ଚୟ କିଛି ମତଲବ ଅଛି ।

- ତମେ ବି ଚାଲ ।

- ନାଁ ବାବା ! ତୁଲୀ ସାଙ୍ଗରେ କୁଆଡେ ଯିବାକୁ ହେବ । ନଗଲେ ତା ରାଗ ପଞ୍ଚମକୁ ଉଠିଯିବ ।

- ଇଚ୍ଛା ନଥିଲେ ଯାଅ କାହିଁକି ? ବ୍ରତୀ ମୃଦୁ ଗଳାରେ କହିଥିଲା ।

ସୁଜାତା ଓ ବ୍ରତୀ ଉପର ଘରେ ଲୁଡୁ ଖେଳୁଥିଲେ ।

ଲୁଡୁ ଖେଳୁ ଖେଳୁ ସୁଜାତା ବ୍ରତୀକୁ ପଚାରିଥିଲେ-ବ୍ରତୀ, ନନ୍ଦିନୀ କିଏ କିରେ ?

- ଗୋଟେ ଝିଅ ।

- ମତେ ଦିନେ ଦେଖେଇବୁ ।

- ଦେଖିବାକୁ ଚାହିଁଲେ ଦେଖେଇବି ।

- ଦେଖିବାକୁ ଇଚ୍ଛା ଅଛି ବୋଲି ତ ପଚାରିଲି ।

- ତା'କୁ ଦେଖିଲେ କିନ୍ତୁ ତମେ ପସନ୍ଦ କରିବନି ।

- କାହିଁକି ?

- ଖୁବ୍ ସାଧାରଣ ଦେଖିବାକୁ ।

- ସେଥିରେ କ'ଣ ଅଛି ।

-'ବସ୍'ଙ୍କୁ ଭଲ ଲାଗିବନି ।

ବାପାଙ୍କୁ ବ୍ରତୀ 'ବସ୍' (boss)ବୋଲି କହୁଥିଲା । ହେତୁ ପାଇବା ଦିନରୁ ବ୍ରତୀ ଶୁଣି ଆସିଛି ବାପାଙ୍କ କଥା-ମୁଁ ଘରର 'ବସ୍' । ମୁଁ ଯାହା କହିବି, ଘରେ ସେଇଆ ହେବ । କଥାଟା ବ୍ରତୀ କେତେ ଲକ୍ଷଥର ଶୁଣିଛି ।

- ଭଲ ନ ଲାଗିଲେ କ'ଣ ହେଲା ?

- ମା' ତମେ କଣ ଜାଣିଛ କହିଲ ? 'ବସ୍' ପ୍ରତିଦିନ ପାଞ୍ଚଟା ପରେ କୁଆଡେ ଯାଆନ୍ତି ?

ହଠାତ୍ ସୁଜାତାଙ୍କର ସନ୍ଦେହ ହୋଇଥିଲା, ଦିବ୍ୟନାଥଙ୍କ ସହ ସେହି ଟାଇପିଷ୍ଟ ଝିଅଟିର ମିଳାମିଶା କଥା ବୋଧେ ବ୍ରତୀର ଅଜଣା ନୁହେଁ ।

- ହଠାତ୍ ଏସବୁ କଥା କାହିଁକି ବ୍ରତୀ ?

- ଏମିତି । ତମେ କ'ଣ ଜାଣ ?

- ସେସବୁ କଥା ଥାଉ, ବ୍ରତୀ ।

ଏହାପରେ ବ୍ରତୀ କିଛି ସମୟ ମନଦେଇ ଖେଳିଥିଲା । ତା'ପରେ କହିଲା- ମା' ମୋ ପାଇଁ କ'ଣ ତୁମ ମନରେ ଖୁବ୍ କଷ୍ଟ ହୁଏ ?

- କି କଷ୍ଟ, ବ୍ରତୀ ?

- କୁହନା ।

- କୌଣସି କଷ୍ଟ ନାହିଁ । କହିବି କ'ଣ ?

- ମଝିରେ ମଝିରେ ମନେ ହୁଏ, ମୋ ପାଇଁ ତୁମ ମନରେ ଗଭୀର ଦୁଃଖ । ବଡ଼ ଭାଇ, ବଡ଼ ଭଉଣୀ ଓ ସାନ ଭଉଣୀଙ୍କ ପାଇଁ ତ ତୁମ ମନରେ କୌଣସି କଷ୍ଟ ନାହିଁ ।

ସୁଜାତା କୌଣସି ଉତ୍ତର ଦେଇ ନଥିଲେ । ମିଛ ବା ମନ ବୁଝାଇବା କଥା ସୁଜାତା କେବେ ବି କହିପାରନ୍ତି ନାହିଁ ।

- କାଇଁ, କିଛି କହିଲନି ତ ?

- କଷ୍ଟ ପାଇବା କାହାକୁ କୁହାଯାଏ ବ୍ରତୀ ?

- ମନରେ ଦୁଃଖ ହେଲେ ତା'କୁ କଷ୍ଟ ପାଇବା ବୁଝାଯିବ ।

- ସମସ୍ତେ କ'ଣ ମୋ ମନ ମୁତାବକ ହେବେ ? ସେମାନେ ସେମାନଙ୍କ ଭଳି ହୋଇଛନ୍ତି । ସେମାନେ ସୁଖରେ ରହିଲେ ମୋର ଆନନ୍ଦ ।

- ସେମାନେ କ'ଣ ସତରେ ସୁଖୀ ?

- ସେହିକଥା ତ ସେମାନେ କହନ୍ତି ।

- ଆଶ୍ଚର୍ଯ୍ୟ !

- କ'ଣ ଆଶ୍ଚର୍ଯ୍ୟ ?

- ତମେ ଏତେ ଉଦାସ କାହିଁକି ମା' ?

- ନ ହୋଇ ଉପାୟ କ'ଣ ଅଛି କହ ? ପିଲାମାନଙ୍କ ସବୁ କଥାରେ ମତେ ନିଷ୍କ୍ରିୟ କରି ଦିଆଯାଇଥିଲା । ତୋ' ବାପା... ତୋ ଜେଜେମା..... ।

ଦିବ୍ୟନାଥ ସୁଜାତାଙ୍କୁ ପ୍ରଥମ ତିନି ପୁଅ ଝିଅଙ୍କ ବିଷୟରେ ସାଧାରଣ ଅଧିକାର ଟିକକ ମଧ ସାବ୍ୟସ୍ତ କରିବା ପାଇଁ ସୁଯୋଗ ଦେଇ ନଥିଲେ । ସବୁ ତାଙ୍କ ମା'ଙ୍କ ହାତରେ ଥିଲା । ସ୍ତ୍ରୀକୁ ଅବମାନନା ନକରି ମଧ ମା'ଙ୍କୁ ମର୍ଯ୍ୟାଦା ଦିଆଯାଇପାରେ; ଏକଥା ଦିବ୍ୟନାଥ ଜାଣି ନଥିଲେ । ସ୍ତ୍ରୀକୁ ପାଦତଳେ ରଖିବେ ଓ ମା'ଙ୍କୁ ମୁଣ୍ଡରେ ଧରି ବୁଲିବେ-ଏହା ଥିଲା ତାଙ୍କର ନୀତି ।

ସୁଜାତାଙ୍କର ଆତ୍ମସମ୍ମାନ ଓ ଅଭିମାନ ଅନେକ ବେଶୀ ଥିଲା । ବିବାହ ପରେ ପରେ ସେ ବୁଝି ଯାଇଥିଲେ ଯେ ଏ ଘର ସଂସାରରୁ ସେ ନିଜକୁ ଦୂରେଇ ଯେତିକି ଉହାଡରେ ରହିବେ ସେଥିରେ ଅନ୍ୟମାନେ ଖୁସିହେବେ । ଏହି 'ଅନ୍ୟ'ମାନେ ହେଲେ ଦିବ୍ୟନାଥ ଓ ଶାଶୁ । ଜ୍ୟୋତି, ତୁଲୀ, ନୀପା ଏ ତିନିଜଣ ମା'ଙ୍କୁ ଅତି ଗୌଣ ଭୂମିକାରେ ଦେଖୁଥିଲେ । ସେମାନେ ତାଙ୍କୁ ଉପେକ୍ଷା କରି ବଡ଼ ହେଲେ । ସେମାନେ କାଳକ୍ରମେ ସୁଜାତାଙ୍କ ଆଖିରେ ଦିନେ ସେହି 'ଅନ୍ୟଦଳ' ପର୍ଯ୍ୟାୟଭୁକ୍ତ ହେଲେ ।

ସତ କହିବାକୁ ଗଲେ ଦିବ୍ୟନାଥ କେବେ ବି ସୁଜାତାଙ୍କ ମନରେ ଥିବା ଏହି ଅତଳ ବ୍ୟଥାର କାରଣ ସଂପର୍କରେ ଖୋଜ ଖବର ନେଇ ନାହାଁନ୍ତି । ସ୍ତ୍ରୀ ପ୍ରତି ଅଧିକ ଆସକ୍ତ ବା ଅଧିକ ଉଦାସୀନ, ଏ ଦୁଇଟିରୁ କୌଣସିଟି ସେ ନୁହଁନ୍ତି । ସ୍ତ୍ରୀ ସ୍ୱାମୀକୁ ସ୍ୱାଭାବିକ ନିୟମରେ ଭଲ ପାଇବ, ଶ୍ରଦ୍ଧା କରିବ ଓ ତାର କଥା ମାନିବ । ଅଥଚ ସ୍ୱାମୀ ସ୍ତ୍ରୀର ଶ୍ରଦ୍ଧା, ଭଲ ପାଇବା, ଆନୁଗତ୍ୟ ହାସଲ କରିବା ପାଇଁ କୌଣସି ପ୍ରଚେଷ୍ଟା କରିବାର ଆବଶ୍ୟକତା ନାହିଁ । ଦିବ୍ୟନାଥ ପୁଣି କହୁଥିଲେ ସେ ଘର କରିଛନ୍ତି । ଚାକରବାକର ରଖିଛନ୍ତି । ଏଣୁ ସେ ଘର ପାଇଁ ଯଥେଷ୍ଟ କର୍ତ୍ତବ୍ୟ କରିଛନ୍ତି । ବାହାରେ ନାରୀ ପ୍ରତି ତାଙ୍କର ଦୁର୍ବଳତାକୁ ସେ

କେବେ ଲୁଚେଇ ନାହାଁନ୍ତି । ଏ ସମସ୍ତ କରିବାର ଅଧିକାର ଅଛି ବୋଲି ଧାରଣା ତାଙ୍କର ଥିଲା ।

ଅବଶ୍ୟ ଏହାର ଅର୍ଥ ନୁହେଁ ଯେ ସେ ଅବିବେକୀ ଥିଲେ । ତାଙ୍କ କମ୍ପାନୀ ଆୟ ବଢ଼ିବାକୁ ଆରମ୍ଭ କରିବା ପରେ ସେ ସୁଜାତାଙ୍କୁ ଚାକିରି ଛାଡ଼ି ଦେବାକୁ କହିଥିଲେ । ସୁଜାତା କିନ୍ତୁ ଚାକିରି ଛାଡ଼ି ନାହାଁନ୍ତି । ତାହା ତାଙ୍କର ଦ୍ୱିତୀୟ ବିଦ୍ରୋହ ।

ତାଙ୍କ ଚାରିତ୍ରିକ ଦୋଷ ସଂପର୍କରେ ତାଙ୍କ ପୁଅ ଝିଅମାନେ ଟିକିନିଖି ଜାଣୁଥିଲେ । ସେଥିରେ ସେ ଲଜ୍ଜିତ ହେଉ ନଥିଲେ । କାରଣ ତାଙ୍କର ପ୍ରଥମ ତିନି ପୁଅ ଝିଅ ତାଙ୍କୁ ଖୁବ୍ ମାନନ୍ତି । ସେମାନେ ତାଙ୍କର ସମସ୍ତ ଆଚରଣକୁ ପୁରୁଷୋଚିତ ବୋଲି ମନେ କରୁଥିବା କଥା ତାଙ୍କ ଧାରଣା ଥିଲା ।

ସେ ଜ୍ୟୋତିକୁ କହିଥିଲେ : ତୋ ମା'ର ବିଚାରବୁଦ୍ଧି ସାମାନ୍ୟ କମ୍ । ଚାକିରି ଛାଡିବନି କାହିଁକି ? ଯାହାକୁ କହନ୍ତି ସ୍ୱାଧୀନ ଚେତା ମହିଳା, ସେ ତ ସେପରି ନୁହେଁ । ଫେଶନ ପାଇଁ ଯେଉଁମାନେ ଚାକିରି କରନ୍ତି ସେମିତି ବି ନୁହେଁ । ତେବେ ସେ ଚାକିରି ଛାଡିବନି କାହିଁକି ?

- ଆଶ୍ଚର୍ଯ୍ୟ !

- ତମେ ମା'ଙ୍କୁ ପଚାରିଛ ?

- କହିଲି, ବର୍ତ୍ତମାନ ଚାକିରି ଆଉ ଦରକାର ନାହିଁ । ଚାକିରି ଛାଡ଼ିଦିଅ । ମା'ତ ମରିଗଲେଣି । ଘର ସଂସାର କଥା ଦେଖ । କହିଲେ ଯେତେବେଳେ ପୁଅଝିଅ ଛୋଟ ଛୋଟ ଥିଲେ ସେତେବେଳେ ସଂସାର ସମ୍ଭାଳିଥିଲେ ଭଲ ହୋଇଥା'ନ୍ତା । ସେ ସମୟରେ ମୋର କିଛି ଦାୟିତ୍ୱ ନଥିଲା । ମତେ କୌଣସି ଦାୟିତ୍ୱ କେହି ଦେଇ ନଥିଲେ । ଏବେ ତମର ପିଲାମାନେ ବଡ଼ ହୋଇଗଲେଣି । ସଂସାର ଗୋଟେ ନିୟମରେ ଚାଲେ । ବର୍ତ୍ତମାନ ପରିସ୍ଥିତିରେ ମୋର ପ୍ରୟୋଜନ ଆହୁରି କମିଯାଇଛି ।

ସୁଜାତାଙ୍କୁ ଦିବ୍ୟନାଥ ବୁଝିପାରି ନାହାଁନ୍ତି । ଯାହାଙ୍କୁ ଉଗ୍ର ସ୍ୱାଧୀନଚେତା ମହିଳା କୁହାଯାଏ, ସୁଜାତା ସେମାନଙ୍କ ପରି ନୁହଁନ୍ତି । ପୁଣି ଚାକିରି ସର୍ବସ୍ୱ ଯେଉଁ ଅତ୍ୟାଧୁନିକା ମହିଳାମାନେ ଗାଡ଼ି ଚଳେଇ କଲିକତା ସହର ଘୁରି ବୁଲନ୍ତି, ସୁଜାତା ସେ ଶ୍ରେଣୀଭୁକ୍ତ ନୁହଁନ୍ତି ।

ପୁରୁଣା ଢଙ୍ଗର ପୋଷାକ ପରିଚ୍ଛେଦରେ ସୁଜାତା ବେଶ୍ ଶାନ୍ତ ଓ ସ୍ୱଳ୍ପଭାଷୀ । ଘରର ଗାଡି କ୍ୱଚିତ ବ୍ୟବହାର କରନ୍ତି । ଟ୍ରାମ୍‌ରେ ଚଢ଼ି ବ୍ୟାଙ୍କ୍ ଯାଆନ୍ତି ଓ ଟ୍ରାମ୍‌ରେ ଘରକୁ ଫେରନ୍ତି । ଘରୁ ବିଶେଷ ପଦାକୁ ବାହାରନ୍ତି ନାହିଁ । ଆତ୍ମୀୟ ସ୍ୱଜନ ଓ ବନ୍ଧୁବାନ୍ଧବଙ୍କ ସହ ଅଧିକ ଘନିଷ୍ଠତା କରନ୍ତି ନାହିଁ । ବ୍ୟାଙ୍କ୍‌ରୁ ଘରକୁ ଫେରି କିଛି ସମୟ ବହି ପଢ଼ନ୍ତି, କୁଣ୍ଡରେ ଲାଗିଥିବା ଫୁଲ ଗଛରେ ପାଣି ଦିଅନ୍ତି ଓ ଛୋଟ ପୁଅ ବ୍ରତୀକୁ ପାଖରେ ପାଇଲେ ତା'ସହ ଦି'ପଦ

କଥା ହୁଅନ୍ତି ।

ଚାକିରି ନ ଛାଡ଼ିବା ସୁଜାତାଙ୍କର ଦ୍ୱିତୀୟ ବିଦ୍ରୋହ । ବ୍ରତୀକୁ ଦୁଇବର୍ଷ ବୟସ ବେଳେ ପ୍ରଥମ ବିଦ୍ରୋହ କରିଥିଲେ ସେ । ଦିବ୍ୟନାଥ କୌଣସି ପ୍ରକାରେ ତାଙ୍କୁ ପଞ୍ଚମ ସନ୍ତାନର ମା' ହେବାକୁ ବାଧ୍ୟ କରିପାରି ନାହାଁନ୍ତି ।

ଦିବ୍ୟନାଥ ଏଥିପାଇଁ ଖୁବ୍ ରାଗି ଯାଇଥିଲେ । କହିଥିଲେ, ବିବାହ କଲେ ସ୍ୱାମୀ ସ୍ତ୍ରୀ ଦୁହିଁଙ୍କର ପରସ୍ପର ପ୍ରତି କିଛି କର୍ତ୍ତବ୍ୟ ଥାଏ । ତମର ଆପତ୍ତିଟା ତା'ହେଲେ କେଉଁଠି ଶୁଣେ ?

- ନା !

ସୁଜାତା ରାଜି ହୋଇ ନାହାଁନ୍ତି ।

- ତମେ ମତେ ବାରଣ କରୁଛ ।

- ତମେ ତମର କାମନା ଚରିତାର୍ଥ ପାଇଁ ଏକା ମୋରି ଉପରେ କୌଣସି ଦିନ ନିର୍ଭର କରି ନାହଁ ।

- କ'ଣ କହିବାକୁ ଚାହଁ ।

- ଯାହା କହିବାକୁ ଚାହୁଁଛି ତା' ତମେ ଜାଣ, ମୁଁ ମଧ୍ୟ ଜାଣେ ।

ପୂର୍ବରୁ ଯେତେବେଳେ ସୁଜାତା ମା' ହୋଇ ଚାଲିଥିଲେ ସେତେବେଳେ ମଧ୍ୟ ଦିବ୍ୟନାଥ ଅନ୍ୟ ନାରୀମାନଙ୍କ ସାହଚର୍ଯ୍ୟରେ ରହୁଥିଲେ । ସୁଜାତାଙ୍କ ଏଭଳି ନିଷ୍ପତ୍ତି ପରେ ସେ ଏହି ସାହଚର୍ଯ୍ୟର ମାତ୍ରାକୁ ଆହୁରି ବଢ଼େଇ ଦେଇଥିଲେ । କିନ୍ତୁ ସେହିଟାକୁ ଯଦି ଗୋଟେ ଫାନ୍ଦ ବୋଲି ଧରାଯାଏ, ତା'ହେଲେ ସୁଜାତା ସେ ଫାନ୍ଦରେ ଧରା ଦେଇ ନାହାଁନ୍ତି ।

କିନ୍ତୁ ବ୍ରତୀର ମୃତ୍ୟୁର ପୂର୍ବଦିନ ସୁଜାତା ବ୍ରତୀ ସହ କଥା ହେଲା ବେଳେ ଏସବୁ କଥା ସେ କିଛି କହି ନଥିଲା । ଏବେ ଜାଣିବାକୁ ପାଇଲେ ଯେ ବ୍ରତୀ ଏସବୁ କଥା ଜାଣିଥିଲା ଓ ବୁଝି ଥିଲା । ସେଥିପାଇଁ ମା' ଉପରେ ସେ ସବୁବେଳେ ନିଘା ରଖୁଥିଲା । ସୁଜାତାଙ୍କ ଦେହ ଖରାପ ହେଲେ ଦଶ ବର୍ଷ ବୟସର ବ୍ରତୀ ଖେଳ ଛାଡି ଘରକୁ ଚାଲି ଆସୁଥିଲା । କହୁଥିଲା, ମୁଣ୍ଡ ଦେଖାଅ ମା' ମୁଁ ଚିପି ଦେଉଛି ।

ଦିବ୍ୟନାଥ କହୁଥିଲେ, ଲବଣୀ ପିତୁଳା । ଝିଅ ମାର୍କା ପୁଅ । ପୁରୁଷତ୍ୱ ନାହିଁ । କିନ୍ତୁ ବ୍ରତୀ ପ୍ରମାଣ କରି ଦେଇଯାଇଛି ସେ କି ଉପାଦାନରେ ଗଢ଼ା ହୋଇଥିଲା । କେତେ ଶକ୍ତି ଓ ସାହସ ତା'ର ଥିଲା !

ବ୍ରତୀ ସେଦିନ ତାଙ୍କ ଆଡକୁ ଅନେକ କ୍ଷଣ ଅନେଇ ରହିଥିଲା । ତା'ପରେ କହିଥିଲା, ବର୍ତ୍ତମାନ ପାଇଁ ଖେଳ ଥାଉ । ଆସ ଗପ କରିବା ।

- ଟିକେ ରହ, କ'ଣ ରୋଷେଇ ହେବ କହିଦେଇ ଆସେ ।

- ସାନନାନୀ ନାହିଁ ?

- ନା । ତୁଲୀ ଚୌନିର ପ୍ରଦର୍ଶନୀ ନେଇ ବ୍ୟସ୍ତ । ମଝିରେ ଥରେ ଆସି ବିନିକୁ ନେଇଯିବ ।

- ତା' ତ ଠିକ୍ କଥା ।

- କାଲିକି କ'ଣ ଖାଇବୁ କହ ?

- ହଠାତ୍ ?

- କାଲି ତୋର ଜନ୍ମଦିନ ନା ?

- ବାପ୍‌ରେ, ଜନ୍ମ ଦିନଟା ତମର ମନେ ଥାଏ ?

- କାହିଁକି ମନେ ରହିବା କଥା ନୁହେଁ ?

- ମୋର ତ ମନେ ରୁହେନା ।

- ମୋର କଣ କେବେ ଭୁଲ ହବା କଥା ?

- କାଲି ତମେ ନିଶ୍ଚୟ କ୍ଷୀରି କରିବ !

- ଏବେ ତ କେବଳ କ୍ଷୀରି ଟିକିଏ କରେ !

- ଟିକେ ରୁହ ମା', କ'ଣ ଖିଆଯାଇ ପାରିବ ଥରେ ଭାବେ ।

- ଏବେ ମାଂସ ଖାଇବାକୁ ଭଲ ପାଉନୁ କାହିଁକି ?

- କାହିଁକି 'ବସ୍' କ'ଣ ଘରେ ଖାଉଛନ୍ତି ?

- ହଁ ।

- ତା'ହେଲେ ଯାହା କିଛି ଗୋଟେ କର ।

ସୁଜାତା ସିଡିରେ ଓହ୍ଲେଇ ଆସୁଥିଲେ ତଳକୁ , ଏତିକି ବେଳେ ଫୋନ୍‌ଟା ବାଜି ଉଠିଲା । ବ୍ରତୀ ଫୋନ୍‌ଟା ଧରିବା ଦେଖି ସେ ତଳକୁ ଓହ୍ଲାଇଗଲେ ।

କିଛି ସମୟ ପରେ ସେ ଉପରକୁ ଆସି ଦେଖିଲେ ବ୍ରତୀ ନୀଳରଙ୍ଗର ସାର୍ଟ ଓ ପ୍ୟାଣ୍ଟ ପିନ୍ଧି ମୁଣ୍ଡ କୁଣ୍ଡାଉଛି ।

- କ'ଣ ହେଲା ?

- ଟିକେ ବାହାରକୁ ଯାଉଚି । କିଛି ଟଙ୍କା ଦେଲ ।

- କୁଆଡ଼େ ବାହାରିଛୁ ?

- ଟିକେ କାମ ଅଛି । ଟଙ୍କା ଦିଅ ।

- ହେଇ ନେ । ଫେରିବୁ କେତେବେଳେ ?

- ଫେରିବି , ଶୀଘ୍ର ଫେରିବି; ତମେ ରୁହ ।

ବ୍ରତୀ ପ୍ୟାଣ୍ଟ ପକେଟ୍‌ରେ କ'ଣ କ'ଣ ଅଛି ପ୍ରଥମେ ଦେଖିନେଲା । କାଗଜ ଖଣ୍ଡେ ବାହାରିବାରୁ ତା'କୁ ଟିକିଟିକି କରି ଚିରି ଫିଙ୍ଗିଦେଲା ।

- କୁଆଡ଼େ ଯାଉଛୁ ?

କୌଣସି ବିଶେଷ ଆଶଙ୍କା ନ କରି ସୁଜାତା ଏହି ସ୍ୱାଭାବିକ ପ୍ରଶ୍ନଟି କରିଥିଲେ । କାରଣ କଲିକତାର ପରିସ୍ଥିତି ଏବେ ଅନ୍ୟ ପ୍ରକାର ହୋଇଛି ।

ବୃଦ୍ଧ, ପୌଢ଼ ଓ ଚାଳିଶ ଟପିଥିବା ଲୋକେ ଯେକୌଣସି ଅଞ୍ଚଳକୁ ଯାଇପାରନ୍ତି । କିନ୍ତୁ ତରୁଣମାନଙ୍କ ପାଇଁ କଲିକତାର ଅଧିକାଂଶ ଅଞ୍ଚଳ ହିଁ ନିଷିଦ୍ଧ ଥିଲା । ଏହି କିଛି ଦିନ ପୂର୍ବରୁ ପୁରୁଣା ଖବରକାଗଜ ଘାଣ୍ଟି ଅଢ଼େଇ ବର୍ଷ ପୂର୍ବେ କଲିକତାରେ ଘଟିଥିବା ଘଟଣା ସବୁ ପଢ଼ି ସୁଜାତା ହତଚକିତ ହୋଇ ଯାଇଥିଲେ ।

ସେ ସମୟଟା ତାଙ୍କର କେବଳ ମନେ ହେଉଥିଲା, ସବୁ ଯେମିତି ଓଲଟ ପାଲଟ ହୋଇଯାଇଛି । ବ୍ରତୀ ଜୀବିତ ଥିଲା ପର୍ଯ୍ୟନ୍ତ ସୁଜାତା ଜାଣି ନଥିଲେ ଯେ ବ୍ରତୀ ଯେଉଁ ଦଳ ଅନ୍ତର୍ଭୁକ୍ତ, ସେମାନେ ଚରମ ଦଣ୍ଡରେ ଦଣ୍ଡିତ । ଖବରକାଗଜରୁ ଗୋଟିଏ ଗୋଟିଏ ଘଟଣା ପଢ଼ି ସେ କେବଳ ଶିହରି ଉଠୁଥିଲେ ।

ସେତେବେଳେ ତାଙ୍କ ଘରେ କେହି ଖବରକାଗଜ ଖୋଲି ପଢ଼ିପାରୁ ନଥିଲେ । କହୁଥିଲେ ଖବରକାଗଜ ଖୋଲିବା ମାତ୍ରେ ଦେଖାଯିବ କେତେ ଜଣ ମରିଛନ୍ତି, କେମିତି ମରିଛନ୍ତି ଓ ତା'ର ବୀଭତ୍ସ ବର୍ଣ୍ଣନା ।

ଖବରକାଗଜ ଦେଖିବା ମାତ୍ରେ ସମସ୍ତଙ୍କୁ ଖରାପ ଲାଗୁଥିଲା । ତେଣୁ ସୁଜାତା ଓ ବ୍ରତୀ ବ୍ୟତୀତ ଅନ୍ୟ କେହି କାଗଜ ପଢୁ ନଥିଲେ ।

ସୁଜାତା ପ୍ରତିଦିନ ଖବରକାଗଜ ଖଣ୍ଡିକ ପଢ଼ି ବ୍ୟାଙ୍କ୍‌କୁ ବାହାରୁଥିଲେ । ତାଙ୍କୁ ପ୍ରତେ ହେଉଥିଲା କଲିକତା ଯେମିତି ଗୋଟିଏ ଭିନ୍ନ ଧରଣର ସହର । ମନେ ହେଉଥିଲା ସେହି ମଇଦାନ, ଭିକ୍ଟୋରିଆ ମେମୋରିଆଲ୍-ମେଟ୍ରୋ, ଗାନ୍ଧୀ ସ୍ମାରକୀ ମୂର୍ତ୍ତି ଏ ସବୁ ଥିବା ସତ୍ତ୍ୱେ ଏଇଟା କଲିକତା ନୁହେଁ । ଏ କଲିକତାକୁ ସେ ଚିହ୍ନି ନାହାଁନ୍ତି କି ଜାଣି ନାହାଁନ୍ତି ? ଖବରକାଗଜ ପଢ଼ି ପରେ ଜାଣିଥିଲେ, ଯେଉଁଦିନ ବଡ଼ିଭୋରରୁ ତାଙ୍କ ଘରେ ଟେଲିଫୋନ୍ ବାଜି ଉଠିଥିଲା, ସେଦିନ ହାପୁର ବଜାରରେ ସୁନାର ଦର ମଧ୍ୟ ଚଢ଼ା ଥିଲା, ବ୍ୟାଙ୍କଗୁଡିକ ମାଧ୍ୟମରେ କୋଟି କୋଟି ଟଙ୍କାର କାରବାର ହୋଇଥିଲା, ପ୍ରଧାନମନ୍ତ୍ରୀଙ୍କ ଶୁଭେଚ୍ଛା ବାର୍ତ୍ତା ବହନ କରି ଭାରତୀୟ ହାତୀ ଶାବକ ଦମଦମ୍‌ରୁ ଟୋକିଓ ଉଡି ଯାଇଥିଲା, କଲିକତାରେ ବିଦେଶୀ ଚଳଚ୍ଚିତ୍ର ଉତ୍ସବ ପାଳିତ ହୋଇଥିଲା । ସଚେତନ ସହର କଲିକତାର ସଚେତନ ଓ ସଂଗ୍ରାମୀ

ଶିଳ୍ପୀ ତଥା ବୁଦ୍ଧିଜୀବିମାନେ ଭିଏତ୍‌ନାମରେ ହୋଇଥିବା ବର୍ବରତାର ପ୍ରତିବାଦରେ ରେଡ୍ ରୋଡ ଓ ସୁରେନ୍ ବାନାର୍ଜୀ ରୋଡସ୍ଥିତ ଆମେରିକାର ଦୂତାବାସ ଆଗରେ ବିକ୍ଷୋଭ ପ୍ରଦର୍ଶନ କରିଥିଲେ ।

ସବୁକିଛି ଘଟିଥିଲା, କଲିକତାର ସ୍ୱତାପମାନ ଯନ୍ତ୍ରରେ ଯାହା ଯାହା ସ୍ୱାଭାବିକ । ସେଥିପାଇଁ କଲିକତା ଭାରତର ସବୁଠାରୁ ସଚେତନ ନଗରୀ ଭାବେ ଗଣ୍ୟ ।

ଏ ସମସ୍ତ ଘଟଣାରୁ ଜଣାପଡୁଥିଲା କଲିକତା ସେଦିନ ମଧ୍ୟ ସ୍ୱାଭାବିକ ଥିଲା । କେବଳ ବ୍ରତୀ ଭବାନୀପୁରରୁ ଦକ୍ଷିଣ ଯାଦବପୁର ଅଞ୍ଚଳକୁ ଯାଇପାରି ନଥିଲା । ବାରାସତ୍‌ରୁ ଆଠଜଣ ତରୁଣ ପ୍ରଥମେ ଦଉଡିରେ ବନ୍ଧା ହୋଇ ଅଚେତ ଅବସ୍ଥାରେ ଗୁଳି ଖାଇ ମୃତ ନ ହେବା ପର୍ଯ୍ୟନ୍ତ ବାହାରିପାରୁନଥିଲେ । ପୂର୍ବ କଲିକତାର ଆବାଲ୍ୟରୁ ଜଣାଶୁଣା ତରୁଣମାନଙ୍କ ରକ୍ତାକ୍ତ ମୃତଦେହକୁ ରିକ୍‌ସାରେ ବସେଇ, ଡ୍ରମ ବଜେଇ କିଛି ଯୁବକ ବିସର୍ଜନ ଶୋଭାଯାତ୍ରାରେ ପ୍ରତିମାଙ୍କ ଆଗେ ଆଗେ ନାଚି ନାଚି ଯିବା ଭଙ୍ଗୀରେ ଚାଲିଥିଲେ । କଲିକତାର ସଚେତନ ଓ ସଂଗ୍ରାମୀ ନାଗରିକମାନଙ୍କ ନିକଟରେ ଏହା ଅସ୍ୱାଭାବିକ ମନେ ହୋଇ ନଥିଲା ।

କଲିକତାର ଲେଖକ-ଶିଳ୍ପୀ ବୁଦ୍ଧିଜୀବୀମାନେ ଏହାର ଠିକ୍ ପନ୍ଦରମାସ ପରେ ବାଂଲାଦେଶର ସଂଗ୍ରାମକୁ ସାହାଯ୍ୟ ଓ ସମର୍ଥନ କଲେ । ସମଗ୍ର ପଶ୍ଚିମବଙ୍ଗକୁ ଓଲଟ ପାଲଟ କରିଦେଇଥିଲେ । ସେମାନେ ନିଶ୍ଚିତ ରୂପେ ଠିକ୍ ବାଟରେ ଚିନ୍ତା କରୁଥିଲେ, ସୁଜାତାଙ୍କ ପରି ମା' ମାନଙ୍କ ଚିନ୍ତାଧାରାରେ ବୋଧହୁଏ ଭୁଲ ଭ୍ରାନ୍ତି ଥିଲା । ପଶ୍ଚିମବଙ୍ଗର ଯୁବକମାନେ ସହରର ଏ ଅଞ୍ଚଳରୁ ସେ ଅଞ୍ଚଳକୁ ନଯାଇ ପାରିବାଟା-ସେମାନଙ୍କ ପାଇଁ କିଛି ଅସ୍ୱାଭାବିକ ନଥିଲା ।

ସେମାନଙ୍କ ସଂଗ୍ରାମୀ ବିବେକ ଏଭଳି ପରିସ୍ଥିତିରେ ଯେତେବେଳେ ସାମାନ୍ୟ ରୁଗ୍‌ଣ ହୋଇ ନଥିଲା, ତେବେ ସେମାନେ ହିଁ ଯଥାର୍ଥ ଏହା ଭାବିବାକୁ ହେବ ।

ପଶ୍ଚିମବଙ୍ଗର ତରୁଣମାନଙ୍କ ଜୀବନ ବିପନ୍ନ । ଏଇଟା ବୋଧହୁଏ ସେମିତି କୌଣସି ଗୁରୁତ୍ୱପୂର୍ଣ୍ଣ ବିଷୟ ନୁହେଁ ? ଯଦି ଗୁରୁତ୍ୱପୂର୍ଣ୍ଣ ବିଷୟ ହୋଇଥାନ୍ତା, ତା'ହେଲେ କଲିକତାର ବୁଦ୍ଧିଜୀବୀ, ଶିଳ୍ପୀ, ସାହିତ୍ୟିକମାନେ ସେ ସଂପର୍କରେ କଲମ ଧରି ନଥାନ୍ତେ ! ଶୋଭାଯାତ୍ରା ବାହାରି ନଥା'ନ୍ତା ।

ସମୁର ଦେହରେ ତେଇଶଟା କ୍ଷତଚିହ୍ନ ଥିଲା ଓ ବିଜିତ୍‌ର ଶରୀରରେ ଷୋହଳଟି । ଲାଲ୍‌ଟୁର ଅନ୍ତନାଡି କାଢ଼ି ସେଥିରେ ତା'କୁ ଗୁଡାଇ ଦିଆଯାଇଥିଲା । ଏଥିରେ ନିଶ୍ଚୟ କୌଣସି ପୈଶାଚିକତା ନାହିଁ ?

ଯଦି ଥାଆନ୍ତା, ତା'ହେଲେ କଲିକତାରେ କବି ଓ ଲେଖକମାନେ ସୀମା ସେପାରି ପୂର୍ବବଙ୍ଗର ପୈଶାଚିକତା ସହିତ ଏପାରି ବଙ୍ଗର ପୈଶାଚିକତା କଥା ମଧ୍ୟ କହିଥା'ନ୍ତେ ।

କିନ୍ତୁ ସେତେବେଳେ ଏମାନେ ନୀରବ ରହିଥିଲେ । କଲିକତାରେ ପ୍ରତିଦିନ ଘଟୁଥିବା ରକ୍ତୋତ୍ସବକୁ ଉପେକ୍ଷା କରି କବି ଓ ଲେଖକମାନେ କେବଳ ସେପାରିର ମରଣ ଯଜ୍ଞ ସମ୍ପର୍କରେ ଯେତେବେଳେ ଲେଖୁଛନ୍ତି ସେତେବେଳେ ସେମାନଙ୍କର ଦୃଷ୍ଟିଭଙ୍ଗୀ ଭୁଲ ଥିଲା ବୋଲି କିଏ ବା କିପରି କହିବ ? ସୁଜାତାଙ୍କର ଦୃଷ୍ଟିଭଙ୍ଗୀ ନିଶ୍ଚିତ ଭାବେ ଭୁଲ !

କବି, ଲେଖକ, ବୁଦ୍ଧିଜୀବୀ, ଶିଳ୍ପୀ ଏମାନେ ତ ସମାଜର ସମ୍ମାନିତ ସଭ୍ୟ, ସ୍ୱୀକୃତିପ୍ରାପ୍ତ ମୁଖପାତ୍ର, ଦେଶର ପ୍ରତିଭୂ ।

ସୁଜାତା କିଏ ? ସେ କେବଳ ଜଣେ ମା' । ଯେଉଁ ହଜାର ହଜାର ହୃଦୟକୁ ଆଜି ଏହି ପ୍ରଶ୍ନ ବିଦୀର୍ଣ୍ଣ କରିଛି ,ସେମାନେ କିଏ ? ସେମାନେ କେବଳ ମାତ୍ର ମା' ।

ବ୍ରତୀ ଯେତେବେଳେ ନୀଳ ରଙ୍ଗର ସାର୍ଟ ପିନ୍ଧି, ଅଭ୍ୟାସ ବଶତଃ ଦୁଇପଟର ମୁଣ୍ଡବାଳକୁ ହାତରେ ସମାନ କରି ବାହାରକୁ ବାହାରିଗଲା; ସୁଜାତା ସେତେବେଳେ ପଚାରିଥିଲେ-କୁଆଡ଼େ ଯାଉଛୁ ?

ବ୍ରତୀ ମୁହୂର୍ତ୍ତିଟିଏ ପାଇଁ ଅଟକି ଠିଆ ହୋଇଥିଲା । ତା'ପରେ ହସି କହିଥିଲା- ଆଲିପୁର । ଡେରି ହେଲେ ଜାଣିବ ଯେ ରଣୁ ଘରେ ରହିଗଲି । ଚିନ୍ତା କରିବନି । ବ୍ରତୀ ସେତିକିବେଳୁ ଜାଣିଥିଲା ଯେ, ଗୋଟେ ଭୟଙ୍କର ବିପଦ ଘଟିବାକୁ ଯାଉଛି । ଯାହାକୁ ଖବର ଦେବାକୁ କୁହାଯାଇଥିଲା , ସେ ସମୁ ଓ ସାଥୀମାନଙ୍କୁ ଖବର ଦେଇ ନାହିଁ । କୌଣସି ଖବର ନପାଇ ପୂର୍ବ ପରିକଳ୍ପନା ଅନୁଯାୟୀ ସମୁ ପ୍ରଭୃତି ଘରକୁ ଫେରିଯାଇଛନ୍ତି ।

ବ୍ରତୀ ସେତେବେଳ ପର୍ଯ୍ୟନ୍ତ ଜାଣିନଥିଲା ଯେ ପିଲାଟି ସମୁ ପ୍ରଭୃତିଙ୍କୁ ଖବର ଦେଇନି; କିନ୍ତୁ ସାହିରେ ସମୁ ଓ ତା ସାଙ୍ଗମାନଙ୍କ ଆସିବା ଖବର ଦେଇ ଦେଇଛି ।

ତେଣୁ ବ୍ରତୀ ଭାବିଥିଲା ରାତି ଭିତରେ ଯଦି ସମୁ ପ୍ରଭୃତିଙ୍କୁ ସାବଧାନ କରି ସାହିରୁ ବାହାର କରାଯାଇ ପାରନ୍ତା ! ଅବଶ୍ୟ ପାରିବ ବୋଲି ବିଶେଷ ଆଶା କରି ନଥିଲା, ପୁଣି ଭାବିଥିଲା ଚେଷ୍ଟା କଲେ ହୁଏତ କରିପାରେ ।

ଅଥଚ ଏତେ ସ୍ୱାଭାବିକ କଣ୍ଠରେ, ଏତେ ସହଜରେ ସେ କହିଥିଲା, ଚିନ୍ତା କରନି ମା'- ଯାହା ଫଳରେ ସୁଜାତା ନିଶ୍ଚିନ୍ତ ନହେବାର ପ୍ରଶ୍ନ ନଥିଲା । ରଣୁ ଘରେ ରହିଯିବା ଖୁବ୍ ନିରାପଦ ।

ମଲି ମିତ୍ର ଓ ଯୀଶୁ ମିତ୍ରଙ୍କ ଘର ବାସ୍ତବରେ ଖୁବ୍ ନିରାପଦ । ଆଉ ବ୍ରତୀ ଓ ରଣୁ କେବଳ ଗୋଟେ କଲେଜର ଛାତ୍ର ନୁହଁନ୍ତି, ସାଙ୍ଗ ହୋଇ ଗୋଟିଏ ସ୍କୁଲରେ ମଧ୍ୟ ପଢ଼ିଛନ୍ତି । ରଣୁ ଏମାନଙ୍କ ସମାଜରେ ବିଦ୍ରୋହୀ ଭାବେ ପରିଚିତ ଥିଲା । ରଣୁ ଛାତ୍ର ଜୀବନରେ ପପ୍ ସଙ୍ଗୀତ ଦଳରେ ଅଶ୍ଳୀଳ ଗୀତ ବୋଲୁଥିଲା । ବିଦ୍ରୋହୀ ରଣୁ ସମାଜକୁ ବିଶ୍ୱାସ କରେନି ବୋଲି ସାହେବ ମାନଙ୍କ ସହିତ 'ମାରିଜୁୟାନା' ନିଶା ଖାଉଥିଲା; କିନ୍ତୁ ରଣୁ ଥିଲା ନିରାପଦ ।

ରଣ୍ଡୁ ସହ ରାତିଟା କଟେଇଲେ କୌଣସି ବିପଦ ନାହିଁ । ସୁଜାତା କହିଲେ - ହେମକୁ କହିବୁ ଦୁଆର ବନ୍ଦ କରିଦେବ । ନିଶ୍ଚୟ କହିବୁ ।

- କହିବି ।

ପାହାଚ ଦେଇ ତଳକୁ ଓହ୍ଲାଉ ଓହ୍ଲାଉ ବ୍ରତୀ ହଠାତ୍ ଅଟକି ଯାଇଥିଲା । ତା'ର ଉପସ୍ଥିତିର ସୂଚନା ପାଇ ସୁଜାତା ତା' ଆଡ଼େ ଚାହିଁଥିଲେ । ବାରଣ୍ଡା ପର୍ଯ୍ୟନ୍ତ ଉଠି ଆସିଥିଲେ । ଦେଖିଲେ ବ୍ରତୀ ତାଙ୍କ ଆଡ଼କୁ ଚାହିଁ ରହିଛି । ଖୁବ୍ ଗଭୀର ଅଭିନିବେଶରେ ସେ ତାଙ୍କୁ ଦେଖୁଛି ।

ମା' ମନ । ମା'ର ମନ -ଏସବୁ ବାଜେ କଥା । କାହିଁ କୌଣସି ପ୍ରତିକ୍ରିୟା, କୌଣସି ଆଶଙ୍କା ହୋଇ ନାହିଁ ସୁଜାତାଙ୍କ ମନରେ । ମା'ର ମନ ପୂର୍ବରୁ ବିପଦ ବିଷୟରେ ଜାଣିପାରେ; ଏକଥା ଯଦି ସତ୍ୟ ହୋଇଥାନ୍ତା ତା'ହେଲେ ସୁଜାତାଙ୍କ ମନରେ ସାଙ୍ଗେ ସାଙ୍ଗେ ବିପଦ ଆଶଙ୍କା ଜନ୍ମିଥାନ୍ତା ।

କିନ୍ତୁ ସେମିତି ତ କିଛି ହୋଇନି ।

ପରେ ସୁଜାତା ଜାଣି ପାରିଥିଲେ ଯେ ଦେଢ଼ବର୍ଷ ଧରି ରଣ୍ଡୁ ସହ ବ୍ରତୀର କୌଣସି ସମ୍ପର୍କ ନଥିଲା । ରଣ୍ଡୁ ସମେତ ଅନ୍ୟ ବନ୍ଧୁମାନଙ୍କ ସହ ବ୍ରତୀର କ୍ୱଚିତ ଦେଖା ସାକ୍ଷାତ୍ ହେଉଥିଲା । ବ୍ରତୀ ତେବେ ତାଙ୍କୁ ସତ କଥା କହି ନଥିଲା ।

ଶୋଇଥିଲେ ସୁଜାତାଙ୍କ ଶରୀର ନିଶ୍ଚଳ ଥାଏ; କିନ୍ତୁ ଚେତନା ସଜାଗ ଥାଏ, ପ୍ରଖର ହୁଏ । ସ୍ୱପ୍ନରେ ଅନେକ ସମୟ ସିଡ଼ି ଉପର ପାହାଚରେ ଠିଆ ହୋଇ ରହୁଥିଲେ ସେ, ତଳେ ବ୍ରତୀ । ସ୍ୱପ୍ନରେ ସୁଜାତା ଜାଣିଲେ ଯେ ବ୍ରତୀ ରଣ୍ଡୁ ଘରକୁ ଯିବ ନାହିଁ, ଯିବ ସମ୍ଭୁ ପ୍ରଭୃତିଙ୍କୁ ବଞ୍ଚାଇବାକୁ । ସେଥିପାଇଁ ଆକୁଳ ହୋଇ ସୁଜାତା ଦୌଡ଼ିଯାଇ ହାତଧରି ବ୍ରତୀକୁ ନିଜ ପାଖକୁ ଟାଣି ଆଣିବାକୁ ଚାହୁଁଥିଲେ । କହିବାକୁ ଚାହୁଁଥିଲେ ବ୍ରତୀ ତୁ ଫେରିଆ ।

କିନ୍ତୁ ସୁଜାତା ଏକଥା କହିପାରୁ ନଥିଲେ । ସ୍ୱପ୍ନରେ ତାଙ୍କର ପାଦ ଦୁଇଟା ପଥର ଭଳି ନିର୍ଜୀବ ହୋଇଯାଇଥିଲା । ବ୍ରତୀ ସେମିତି ତାଙ୍କ ମୁହଁକୁ ଚାହିଁ ରହିଥିଲା; ଅପେକ୍ଷା କରି ରହିଥିଲା । ତା'ପରେ ଯେତେବେଳେ ବ୍ରତୀର ଗଳାରେ, ପେଟରେ ଓ ଛାତିରେ ନୀଳ ସାର୍ଟ ଉପରେ ତିନୋଟି ଗୋଲାକାର ଦାଗ ସ୍ପଷ୍ଟ ହୋଇଉଠୁଥିଲା, ମୁହଁର ଚେହେରାଟା ବଦଳି ଯାଉଥିଲା, ମୁଣ୍ଡପଛପଟ ଗଭୀର କ୍ଷତରୁ ଛୁରୀର ଦାଗ ଫୁଟି ଉଠିଲା, ସେତେବେଳେ ସୁଜାତାଙ୍କ ନିଦ ଭାଙ୍ଗିଥିଲା । ନିଦ ଭାଙ୍ଗିବା କ୍ଷଣି ପୁନର୍ବାର ସେହି ମାୟା, ପ୍ରହେଳିକା ଓ ଭ୍ରମ । ସତେ ଯେମିତି ଏ ପର୍ଯ୍ୟନ୍ତ ବ୍ରତୀ ଏଠାରେ ଥିଲା, ସାଙ୍ଗେ ସାଙ୍ଗେ ବାହାରି ଗଲା ।

ନା ବ୍ରତୀ ବାହାରିଯିବା ସମୟରେ ତାଙ୍କ ମନରେ କୌଣସି ଆଶଙ୍କା ହୋଇ ନଥିଲା । ରାତିରେ ମଧ୍ୟ ସେ ଦିବ୍ୟନାଥଙ୍କୁ ହଜମୀ ଔଷଧ ଖାଇବାକୁ ଦେଇଥିଲେ । ସୁମନ କାନ୍ଦି

ଉଠିବାରୁ ତାକୁ ବାହାରକୁ ଆଣି ଭୁଲାଇବାକୁ ଚେଷ୍ଟା କରିଥିଲେ । ହେମକୁ ମନେ ପକେଇ ଦେଇଥିଲେ ଯେ କାଲି ବ୍ରତୀର ଜନ୍ମ ଦିନ । କାଲି ପାଇଁ ଅଧିକା ଗୋଟେ ଲିଟର କ୍ଷୀର ଆଣିବାକୁ ସେ ଯେମିତି ନଭୁଲେ । କ୍ଷୀରି ହେବ ।

ଖୁବ ସ୍ୱାଭାବିକ । ଦୈନନ୍ଦିନ ରୁଟିନ୍‌ବନ୍ଧା ଘଟଣା ।

ସୁଜାତା କ'ଣ ଜାଣିଥିଲେ ଯେ ମଧ୍ୟରାତ୍ରୀ ପୂର୍ବରୁ ସମୁର ଘର ସାମ୍ନାରେ ଲୋକମାନଙ୍କର ଭିଡ଼ ଜମିବ ? ସାହିର ମୁଖିଆମାନେ ଚିତ୍କାର କରି କହିଥିଲେ - 'ବାହାର କରି ଦିଅ ସେମାନଙ୍କୁ ।'

ପ୍ରଥମଥର ପାଇଁ ସମୁର ମା'ଙ୍କ ପାଖରେ ଯେତେବେଳେ ସୁଜାତା ଠିଆ ହେଲେ, ସମୁ ଘରେ ବସିଲେ, ସେତେବେଳେ ତାଙ୍କର ମନେହେଲା, ଏଇଟା ଗୋଟିଏ ସ୍ୱାଭାବିକ ପରିବାର ଓ ଏ ପରିବାରର ଲୋକମାନଙ୍କ ମାନସିକ ପ୍ରତିକ୍ରିୟା ମଧ୍ୟ ସ୍ୱାଭାବିକ ।

ସୁଜାତା ବୁଝିଥିଲେ, ତାଙ୍କର ଶିକ୍ଷା, ଦୀକ୍ଷା, ସ୍ୱଚ୍ଛ ଚିନ୍ତା ଓ ସେହି ଚିନ୍ତାକୁ ବିଚକ୍ଷଣ ଭାବେ ପ୍ରକାଶ କରିବାର କ୍ଷମତା ଥାଇ ସେ ଯାହା ସବୁ ଚିନ୍ତା କରନ୍ତି, ସମୁର ମା' ଅଳ୍ପ ଶିକ୍ଷାଦୀକ୍ଷା, ସାମାନ୍ୟ ବିଦ୍ୟାବୁଦ୍ଧି, ନିଜର ଚିନ୍ତାକୁ ବିଚକ୍ଷଣ ଭାବେ ପ୍ରକାଶ କରିବାକୁ ଏକାନ୍ତ ଅକ୍ଷମ ହୋଇ ମଧ୍ୟ ଅନୁରୂପ କଥା ହିଁ ଚିନ୍ତା କରନ୍ତି ।

ତାଙ୍କର ଯାହା ମନେ ହୋଇଥିଲା, ସମୁର ମା' ସେହି ଏକା କଥା କହି କାନ୍ଦି ପକାଇଥିଲେ । କାହିଁକି ମାରି ପକାଇଲେ ଭଉଣୀ ? କ୍ଷତବିକ୍ଷତ ହୋଇ କିମ୍ବା କୌଣସି ଅଙ୍ଗ ହରାଇ ସେମାନେ ବଞ୍ଚି ଥାନ୍ତେ ଭଲା, ତା'ହେଲେ ଜାଣିଥାନ୍ତି ସମୁ ମୋର ବଞ୍ଚିଛି । ଆଉ ନଦେଖିଲେ ମଧ୍ୟ ଜେଲ୍‌ରେ ତ ରଖିଥାନ୍ତେ । ଜାଣିଥାନ୍ତି ଯେ ମୋର ପିଲାଟା ବଞ୍ଚିଛି । ମୁଁ କି ଅପରାଧ କରିଥିଲି କୁହ ଭଉଣୀ !

ସମୁର ବଡ଼ ଭଉଣୀ କହିଥିଲା, ମା' ତମେ କାନ୍ଦନା । ସେ ତ ଆଉ ଫେରିବନି । ସେ ତ ତୁମ ଛାତିରେ ଆଘାତ ଦେଇ ସବୁଦିନ ପାଇଁ ଚାଲିଯାଇଛି । ମୋର ମୁହଁକୁ ଚାହିଁ ଥୟଧର ।

ମନକୁ ତ ଅନେକ ଥର ନ କାନ୍ଦିବାକୁ ବୁଝାଏ,କିନ୍ତୁ ମନେ ବୁଝେନା । କହିଲେ ମା', କାନ୍ଦି କାନ୍ଦି ଅଯଥା ଶରୀର କ୍ଷୟ କଲେ କ'ଣ ବା ଲାଭ ?

ସେମାନେ ଠିକ୍ କଥା କହନ୍ତି । ମୁଁ ଭଉଣୀ ଅଭାଗିନୀ, ଆଜନ୍ମ ଦୁଃଖୀ । ମୋ' ଦୁଃଖରେ ବିଲୁଆ, କୁକୁର ମଧ୍ୟ କାନ୍ଦନ୍ତି । କେଉଁକାଳୁ ବାପା ମୋର ବାହା ଦେଇଥିଲେ । ଲେଖାପଢ଼ା ସେମିତି ଶିଖିନି । ଘରର ବଡ଼ ମୁଁ । ସେଥିରେ ପୁଣି ସଂସାର ଦେଖିବାକୁ ପଡୁଥିଲା । ଗାଆଁରେ ଉର୍ବର ଜମି କିଛି ଥିଲା । ଏଠି ତ ଭଉଣୀ କିଛି ନାହିଁ । ସେମିତି ଚାଲାକ ଚତୁର ମଣିଷ ଇଏ ନୁହଁନ୍ତି ଯେ କିଛି ଫନ୍ଦି ଫିକର କରି ଭାଗ୍ୟ ଫେରେଇ ଆଣିବେ । ଏଠି ବର୍ତ୍ତମାନ

କେବଳ ଦୁଃଖ ଆଉ ଦୁଃଖ ।

ସୁଜାତା ସମୁ ମା'ର ପ୍ରତ୍ୟେକଟି କଥା ବୁଝି ପାରୁଥିଲେ ।

ଏବେ ସମସ୍ତେ-ଏପରିକି ଝିଅପିଲାମାନେ କିଛି ଲେଖାପଢ଼ା ଶିଖୁଛନ୍ତି । ଆଜିକାଲି ଲେଖାପଢ଼ା ବିନା କିଛି କରି ହୁଏନା ଭଉଣୀ । ସମୁ ପଢ଼ାପଢ଼ିରେ ସେମିତି ବିଶେଷ ଖର୍ଚ୍ଚ ହେଉ ନଥିଲା । ପ୍ରତିବର୍ଷ ବୃତ୍ତି ପାଉଥିଲା ସେ । ବୃତ୍ତି ପାଉଥିଲା ବୋଲି ତ ଭଲ କଲେଜରେ ଯାଇ ଭର୍ତ୍ତି ହେଲା । କିଏ ତାକୁ ଏମିତି ବାଟ ଦେଖେଇଲେ ? କେଉଁମାନେ ପୁଣି ତା'କୁ ମରିବାକୁ ଶିଖେଇଲେ ? କେତେଥର କହିଛି ସମୁରେ ! କ'ଣ କରୁଛୁ ? ବାହାରକୁ ଏତେ କୁଆଡ଼େ ଯାଉଛୁ ? ସେ କହୁଥିଲା-ମା', ଡରୁଛ କାହିଁକି ? ମୁଁ କୌଣସି ଖରାପ କାମ କରୁନି । ସେତେବେଳେ ବୁଝି ପାରି ନଥିଲି । ସମୁର ବଡ଼ ଭଉଣୀ ପଚାରିଥିଲା ମାଉସୀ ଚା' କରିବି ?

- ଟିକେ ଦିଅ ।

ସମୁର ମା' କହିଥିଲେ ଏହି ଝିଅ କଲେଜ ପଢ଼ା ଛାଡି ଟିଉସନ୍ କରେ, ଟାଇପ୍ ମଧ୍ୟ ଶିଖେ । ତା' ତଳ ଝିଅକୁ ତା' ମାଉସୀ ନେଇ ଯାଇଛି । ତଥାପି ଆହୁରି ଦି'ଟା ଅଛନ୍ତି । ଟିଉସନ୍ କରି ଚାରି ଚାରିଟା ପେଟକୁ ପୋଷିବା କ'ଣ ସହଜ କଥା ଭଉଣୀ ।

ସମୁର ବଡ଼ ଭଉଣୀ ଚାହା ଆଣି ଦେଇଥିଲା । ଏମିତି କପ୍‌ରେ ସୁଜାତା କେବେ ଚାହା ପିଇ ନଥିଲେ ।

ଅସଲ କଥା ହେଲା କପାଳ । ଭେଣ୍ଡିଆ ପୁଅ ପାଠପଢ଼ା ସାରି ଚାକିରି କରିବ; ବାପା ମା'ଙ୍କ ମୁହଁରେ ମୁଠେ ଅନ୍ନ ଦେବ, ବଡ଼ ଭଉଣୀ ବାହାଘର କରିବ ! ହେଲେ ମୋ କପାଳ ଫଟା । ଭୁଆସୁଣି ଝିଅଟା କପାଳରେ ସିନ୍ଦୂର କେବେ ଲଗାଇ ପାରିବ ?

- ସେମିତି ଭାବୁଛନ୍ତି କାହିଁକି ? ଆସ୍ତେ ଆସ୍ତେ ସବୁ ଠିକ୍ ହୋଇଯିବ ନିଶ୍ଚୟ । ଦିନେ ତାର ବାହାଘର ମଧ୍ୟ ହୋଇଯିବ ।

କଥାଟା ସୁଜାତା ଆନ୍ତରିକତା ସହିତ କହିଥିଲେ । ଅଥଚ କଥାଟାକୁ ସମୁର ମା' ଅନ୍ୟ ଅର୍ଥରେ ନେଇ ରାଗି ପାରିଥାନ୍ତେ । ରାଗିଥିଲେ ଦୋଷ ଦିଆଯାଆନ୍ତା ନାହିଁ । କାରଣ ଅଭିଭାବକ ନାହାଁନ୍ତି, ଟଙ୍କା ପଇସା ନାହିଁ; ସାହାଯ୍ୟ କରିବା ପାଇଁ କେହି ମଣିଷ ନାହାଁନ୍ତି । ସମୁର ମା' ଝିଅକୁ ଦିନେ ନା ଦିନେ ବାହା ଦେବେ, ଏପରି କଥା କହିଲେ କଟା ଘା'ରେ ଲୁଣ ଦେବା ପରି ମନେ ହୁଏ ।

ସମୁର ମା' କିନ୍ତୁ ରାଗି ନାହାଁନ୍ତି । ସୁଜାତାଙ୍କ ହାତ ଧରି ସେ କହିଥିଲେ; ଆପଣଙ୍କ ତୁଣ୍ଡ ସୁତୁଣ୍ଡ ହେଉ ଭଉଣୀ ।

ତା'ପରେ କ'ଣ ଭାବି କହିଥିଲେ, କାହିଁକି ବା ଆସିଥିଲେ ସେମାନେ ? ଚାରିଜଣ

ତ ସାହି ବାହାରେ ଥିଲେ । କାହିଁକି ବା ମରିବାକୁ ଆସିଥିଲେ ? ଆପଣଙ୍କ ପିଲା କାହିଁକି ବା ସେମାନଙ୍କୁ ସାବଧାନ କରିବାକୁ ଆସିଥିଲା ? ଆପଣଙ୍କର ତ ଆଉ ଗୋଟେ ପୁଅ ଅଛି । ତାକୁ ଛାତିରେ ଧରି ଏହି ଦୁଃଖ ଭୁଲିବେ ।' ମୋର ସେହି ଗୋଟିଏ, ଛୋଟବେଳେ 'ଟାଇଫଏଡ୍'ରେ ପଡି ସମୁ ମୃତ ପ୍ରାୟ ହୋଇ ଯାଇଥିଲା । ତା'କୁ ଖୁବ୍ କଷ୍ଟରେ ବଞ୍ଚେଇ ଥିଲି, ଆଜି ଏହା ଦେଖିବା ପାଇଁ ?

ଦଶମ ଶ୍ରେଣୀରେ ପଢୁଥିଲା ବେଳେ ବ୍ରତୀକୁ ମଧ୍ୟ 'ଜଣ୍ଡିସ୍' ହୋଇଥିଲା । ଜଣ୍ଡିସ୍‌ରେ ପଡି ବ୍ରତୀ ଭାରୀ ଦୁର୍ବଳ ଓ ହଳଦିଆ ପଡ଼ିଯାଇଥିଲା । ସେଥିପାଇଁ ମସଲା ପଡି ନଥିବା ସିଝା ଖାଦ୍ୟ ଦିଆଯାଉଥିଲା ବ୍ରତୀକୁ । ସେ ଯାହା ଖାଉ ନଥିଲା ସୁଜାତା ମଧ୍ୟ ସେ ସବୁ ଖାଦ୍ୟ ଖାଉ ନଥିଲେ । ସେତେବେଳେ କୁକୁଡା ମାଂସ ଛଡା ଅନ୍ୟ ମାଂସ ବ୍ରତୀର ଖାଇବା ମନା ଥିଲା । ସେହି ସମୟରୁ ସୁଜାତା ମଧ୍ୟ ମାଂସ ଖାଇବା ଛାଡି ଦେଇଥିଲେ; ଆଉ କୌଣସି ଦିନ ମଧ୍ୟ ଖାଇ ନାହାଁନ୍ତି ।

- ଅନ୍ୟ ପିଲାମାନେ କ'ଣ ପାଖ ପଡିଶାର ?

- ସେମାନେ ସମସ୍ତେ ଏ ସାହିର କିମ୍ବା ଆର ସାହିର । ବିଜିତ୍‌ର ମା'କୁ ତା ଭାଇ କାନପୁର ନେଇଯାଇଛି । ପାର୍ଥର ମା ଥାଇ ମଧ୍ୟ ନାହିଁ । ରୋଗିଣୀ ମଣିଷ, ସେ କ'ଣ ଏ ଆଘାତ ସମ୍ଭାଳି ପାରିବ ? କତରା ଲଗା ହୋଇଗଲାଣି । ଗୋଟେ ଯମ ମୁହଁରେ ଗଲା, ଛୋଟଟା ଦେଶାନ୍ତରୀ । ସେ ଫେରିଲେ ତା'କୁ କୁଆଡେ ଖଣ୍ଡଖଣ୍ଡ କରି ହାଣି ପକାଇବେ ।

- ପାର୍ଥର କ'ଣ ସେ ଗୋଟିଏ ଭାଇ ?

- ହଁ ଭଉଣୀ ! ପାର୍ଥର ମା' ବିଛଣାରୁ ଉଠି ପାରୁନି, ପାଟିକୁ ଖାଦ୍ୟ ନେଉନି । କେବଳ କାନ୍ଦୁଛି । ସବୁବେଳେ କହୁଛି ମୋ ପିଲା ଦି'ଟାକୁ ଆଣି ଦିଅ । କେମିତି ପାଗଳୀଙ୍କ ଭଳି ହେଉଛି ଭଉଣୀ । ମାଇପି ଜୀବନ କଇଁଚ ପରି; ମଲେ ସେ ତରିଯିବ ।

- ଆଉ ଗୋଟେ ପିଲା ଥିଲା ?

- ଲାଲ୍‌ଟୁ ? ଲାଲ୍‌ଟୁ ମା'କୁ ଜଳେଇ ପୋଡ଼େଇ ଯାଇନି । ତା' ମା' ଆଗରୁ ମରିଯାଇଛି । ଲାଲ୍‌ଟୁ ମୂଳରୁ ଅବାଗିଆ । ବାପ ବୁଢ଼ା ବୟସରେ ଆଉ ଗୋଟାକୁ ବାହା ହୋଇ ପଡିଥିଲା । ଏଥିରେ ରାଗିମାଗି ଲାଲ୍‌ଟୁ ଆସି ତା' ଭଉଣୀ ଘରେ ରହିଲା । ତା'ପରି ପୁଅ ଏ ଅଞ୍ଚଳରେ ନଥିଲେ । ପାଠରେ ଯେମିତି, ଚେହେରା ମଧ୍ୟ ସେହିଭଳି ସୁସ୍ଥ, ସବଳ । କଲୋନୀରେ କିଛି ଭଲ କାମ ହେଲେ ଆଗ ଭୁସ୍ କରି ଡେଇଁ ପଡୁଥିଲା ।

- ନିକଟରେ ରହୁଥିଲା ?

- ଏହି ଦି'ଇଟା ଗଳି ଆରପଟେ । ଲାଲ୍‌ଟୁ, ପାର୍ଥ, ବିଜିତ୍ ଓ ସମୁ ସମସ୍ତେ ଏକା ପ୍ରକୃତିର ଥିଲେ । ସେମାନେ ଥିଲାବେଳେ କଲୋନୀରେ କେହି ଖରାପ କାମ କରି ମନ୍ଦକଥା

କହି ପାର ପାଇପାରୁ ନଥିଲେ । ଲାଲ୍‌ଟୁ ତ ଏମାନଙ୍କୁ ମତେଇ ଶିଖେଇ ସେହି ରାସ୍ତାରେ ନେଇଥିଲା ଭଉଣୀ । ଏବେ ନିଜେ ବି ଶେଷ ହୋଇଗଲା ।

ସୁଜାତାଙ୍କର ମନେ ପଡ଼ିଲା ସେ ଯେମିତି ଶବ ଘରେ କେତୋଟି ଶବ ଦେଖିଥିଲେ । ଶ୍ମଶାନରେ କେତେଜଣ ଲୋକଙ୍କୁ ମୁଣ୍ଡପିଟି କାନ୍ଦୁଥିବାର ମଧ୍ୟ ଶୁଣିଥିଲେ ।

ସେତେବେଳେ ସେହି ମୃତ ଶରୀର, ସେହି ଶୋକାର୍ତ୍ତ ନରନାରୀ, ସେମାନଙ୍କ ସହ ସେ କେଉଁ ଗାଣିତିକ ନିୟମ ଅନୁସାରେ ଏକାକାର ହୋଇଯାଇଥିଲେ; ତାହା ନିଜେ ବୁଝିପାରି ନଥିଲେ । ବର୍ତ୍ତମାନ ବୁଝି ପାରୁଛନ୍ତି କେବଳ ମୃତ୍ୟୁରେ ବ୍ରତୀ ସେମାନଙ୍କ ସହ ଏକ ହୋଇ ଶୋଇ ନଥିଲା, ଜୀବନରେ ମଧ୍ୟ ସେମାନଙ୍କ ସହ ଏକ ଥିଲା ।

ବ୍ରତୀ ଜୀବନର ଯେଉଁ ଅଧ୍ୟାୟ ଟିକକ ନିଜେ ତିଆରି କରିଥିଲା, ଯେଉଁଠି ଥିଲା ପୂର୍ଣ୍ଣତା ସେହି ଅଧ୍ୟାୟରେ ଏମାନେ ତାର ଅତି ଆପଣାର ଥିଲେ । ନିଜର ପରିବାର ନୁହେଁ । ମୋ ପୁଅ, ମୋ ଭାଇ-ଏ ଗୁଡିକ ତାର ଜନ୍ମରୁ ନିର୍ଦ୍ଦିଷ୍ଟ କେତେଗୁଡିଏ କେବଳ ସଂଜ୍ଞା ବିଶିଷ୍ଟ ଥିଲା ।

ନିଜର ବିଶ୍ୱାସ, ନିଜର ଆଦର୍ଶକୁ ନେଇ ସେ ନିଜକୁ ଯେଉଁଭାବେ ଗଢ଼ି ତୋଳିଥିଲା, ଯେଉଁ ବ୍ରତୀକୁ ସୃଷ୍ଟି କରିଥିଲା, ସେ ବ୍ରତୀ, ତା ମା'କୁ ଖୁବ୍ ଭଲ ପାଉଥିଲା । ଆଉ ମା' ତା'କୁ ଗଭୀର ଭାବେ ଭଲ ପାଇଲେ ମଧ୍ୟ ତା'କୁ ଠିକ୍ ଚିହ୍ନିପାରି ନଥିଲେ । ଅଥଚ ଏହି ପିଲାମାନେ ସୁଜାତା ଚିହ୍ନି ନଥିବା ବ୍ରତୀକୁ ଠିକ୍ ଚିହ୍ନିଥିଲେ ।

ତେଣୁ ବ୍ରତୀ ଓ ସେମାନେ ଜୀବିତାବସ୍ଥାରେ ଏକାତ୍ମ ଥିଲେ; ମୃତ୍ୟୁରେ ମଧ୍ୟ ଅଭିନ୍ନ । ଯେଉଁମାନେ ସେହି ପିଲାମାନଙ୍କର ବିୟୋଗ ଜନିତ ଶୋକ ହୃଦୟରେ ଧରି ରଖିଛନ୍ତି; ସେମାନଙ୍କ ସହିତ ସୁଜାତା ଆଜି ଏକାତ୍ମ ।

ବ୍ରତୀ ମୃତ୍ୟୁର ଏକ ବର୍ଷ ପରେ ସୁଜାତା ସମୁର ଘରକୁ ଆସିଲେ । ସେ ପର୍ଯ୍ୟନ୍ତ ନିଜ ଶୋକରେ ନିଜେ ଯେପରି ବନ୍ଦୀ ହୋଇ ରହିଥିଲେ ।

ସମୁ ମା'ର ବୁକୁ ଫଟା କରୁଣକାନ୍ଦଣା ଓ ମୃତ ପିଲାମାନଙ୍କର କଥା ଶୁଣିବା ପରେ ସୁଜାତା ବୁଝି ପାରିଥିଲେ ଯେ ବ୍ରତୀ ତାଙ୍କୁ ଏଭଳି ଶୋକରେ ନିଃସଙ୍ଗ କରି ଚାଲି ଯାଇନି । ତାଙ୍କ ପରି ଆହୁରି ଅନେକଙ୍କୁ ଏକତ୍ର କରି, ଆତ୍ମୀୟତା ସୂତ୍ରରେ ବାନ୍ଧି ଦେଇଯାଇଛି ।

କିନ୍ତୁ ସୁଜାତା କିପରି ସେହି ଅନେକଙ୍କ ଗହଣରେ ପଶି ମୁକ୍ତି ପାଇବେ ? ସେ ଯେ ଧନୀ ମାନୀ ଓ ଅନ୍ୟ ଶ୍ରେଣୀର ମଣିଷ ? ଏମାନେ ତାଙ୍କୁ ଗ୍ରହଣ କରିବେ ବା କାହିଁକି ?

ସମୁର ମା' କହିଥିଲେ-ଲାଲ୍‌ଟୁ କାମ କାମ ହୋଇ ପାଗଳ ପ୍ରାୟ । ଗୋଟିଏ କାମ ମଧ୍ୟ ଛୁଟିନି । ସବୁବେଳେ ମନରେ ଉତ୍ତେଜନା, ଆଉ ସେଥିପାଇଁ ଏତେ ଜ୍ୱାଳା !

ଏଥରକ ମଧ୍ୟ ସମୁର ମା' କାନ୍ଦୁଥିଲେ । ସୁଜାତାଙ୍କତାଙ୍କ ହାତରେ ହାତ ରଖି ଆଉଁସୁଥିଲେ ।

ଗୋଟେ ବର୍ଷରେ ସମୁର ଘରଟା ଆହୁରି ଭାଙ୍ଗିରୁଜି ଯାଇଛି । ଦାରିଦ୍ର୍ୟ ଅଧିକ ପ୍ରକଟିତ । ସମୁର ମା' ଏମିତି ଲୁଗା ଖଣ୍ଡିଏ ପିନ୍ଧିଥିଲେ ଯାହାକୁ ପିନ୍ଧି ସେ ସୁଜାତାଙ୍କ ସାମ୍ନାକୁ ବାହାରିବା କଥା ନୁହଁ । ସୁଜାତା ଆସିବାରୁ ଭିତରକୁ ଯାଇ ସେ ସେଇଟିକି ବଦଳେଇ ଆସିଥିଲେ । ଏହି ଲୁଗା ଯଦି ଏତେ ଛିଣ୍ଡା, ତାଳିପକା ଓ ଜୀର୍ଣ୍ଣ,ତା'ହେଲେ ଏହା ପୂର୍ବରୁ ସମୁର ମା' କିଭଳି ଲୁଗା ପିନ୍ଧିଥିବେ !

ଏବେ ଘରର ଗୋଟେ ପଟେ ଚାଳ ନଇଁ ଆସିଛି । ଖୁଣ୍ଟି ଲଗାଇ ଟେକି ଦିଆଯାଇଛି । ଖଟିଆ ଖଣ୍ଡେ ଘରେ ଦେଖିବାକୁ ପାଇଲେ ନାହିଁ ସୁଜାତା । ଚଟାଣର ଇଟା ଉପରେ ପଟା ଥୁଆ ହୋଇଛି । ସମ୍ଭବତଃ ବାରଣ୍ଡାରେ ଏବେ ଆଉ ରୋଷେଇ ହେଉ ନାହିଁ । ଘର କଣରେ ଛୋଟ ଚୁଲୀଟିଏ, ଓଲଟା ହୋଇଥିବା ହାଣ୍ଡି ଓ ଦୁଇ ତିନୋଟି ବାସନ ।

ସମୁର ମା'ଙ୍କ ଚେହେରାଟା ଆହୁରି ଜୀର୍ଣ୍ଣ, ଶୀର୍ଣ୍ଣ । ଦୁର୍ଭାଗ୍ୟ ହାତରେ ନିଜକୁ ସମର୍ପି ଦେଲେ ମଣିଷ ଯେପରି ସଂପୂର୍ଣ୍ଣ ହତାଶିଆ ଓ ଅସହାୟ ଦିଶେ ସେ ସେପରି ଦିଶୁଥିଲେ । ରାସ୍ତା କଡରେ ପଡ଼ିଥିବା ରୁଗ୍ଣ ଶିଶୁ, ନର୍ଦ୍ଦମାରେ ପଡ଼ିଥିବା ବିରାଡ଼ି ଛୁଆ, ରୁମ ଉଠା କାଉଛୁଆମାନଙ୍କ ପରି ତାଙ୍କ ଚେହେରାରେ ଆସନ୍ନ ମୃତ୍ୟୁର ପୂର୍ବାଭାସ ।

ଅଥଚ ସମୁର ଭଉଣୀର ଚେହେରାରେ ରୁକ୍ଷତା, ଔଦ୍ଧତ୍ୟ ଓ କ୍ରୋଧୀ ଭାବ ସୁସ୍ପଷ୍ଟ । ଗୋଟିଏ ବର୍ଷର ଜୀବନ ସଂଘର୍ଷ ତା'ର ସମସ୍ତ କୋମଳତାକୁ ଜାଳିପୋଡି ଏମିତି ପାଉଁଶ କରିଦେଇଛି । ସୁଜାତା କ୍ଷୁଧିତ ଓ ତୃଷିତ ଆଖିରେ ସମୁର ମା'ଙ୍କୁ ଦେଖିବାକୁ ଲାଗିଲେ । ଘରଟାକୁ ମଧ୍ୟ । ମନ କହୁଛି ଏଠିକି ଆଉ ଆସିବା ଠିକ୍ ହେବନି । ସମୁର ମା'ଙ୍କ ପାଖରେ ବସି ସେ ଅନୁଭବ କରିବେନି ଯେ ସେ ଏ ଦୁନିଆରେ ଏକୁଟିଆ ନୁହଁନ୍ତି । ଆଗାମୀ ଜାନୁୟାରୀ ସତର ତାରିଖରେ ସୁଜାତା କ'ଣ କରିବେ ? ଗତ ଜାନୁୟାରୀ ସତର ତାରିଖଠାରୁ ଆଜି ପର୍ଯ୍ୟନ୍ତ ଏହି ଗୋଟିଏ ବର୍ଷ ଧରି ଜାଣିଥିଲେ ଯେ ତାଙ୍କର ଯିବାପରି ଓ ବସିବାପରି ଜାଗାଟିଏ ଅଛି । କିନ୍ତୁ ଆଜି ତାଙ୍କୁ ଦେଖି ନିଶବ୍ଦରେ ଉପେକ୍ଷା କରି ବାହାରକୁ ବାହାରି ଗଲା ସମୁର ବଡ଼ ଭଉଣୀ । ଇଙ୍ଗିତ ଦେଇଗଲା, ଏଠି ସୁଜାତାଙ୍କ ପରି ମଣିଷ ଅବାଞ୍ଛିତ ।

ସେଥିପାଇଁ ସୁଜାତା କ୍ଷୁଧିତ ଓ ଆକୁଳ ନୟନରେ ଘରଟାକୁ ଓ ସମୁର ମା'ଙ୍କୁ ଦେଖିବାକୁ ଲାଗିଲେ । ଏହି ଘରେ ଜୀବନର ଶେଷ କେଇଟି ଘଣ୍ଟା କଟେଇଥିଲା ବ୍ରତୀ । ସମୁ ମା' ପାରି ଦେଇଥିବା ତୁଚ୍ଛ ମଇଳା ବିଛଣାରେ ଶୋଇଥିଲା । ସମୁର ମା' ତାଙ୍କ ପୁଅକୁ ତା ଜୀବନର ଶେଷ ମୁହୂର୍ତ୍ତର କିଛିକ୍ଷଣ ପୂର୍ବ ପର୍ଯ୍ୟନ୍ତ ନିଜ ପାଖରେ ପାଇଥିଲେ ।

ସମୁର ମା' କହିଥିଲେ ଆପଣ କଷ୍ଟ ପାଇଛନ୍ତି, ତେଣୁ ଆସୁଛନ୍ତି । ମୁଁ ତ ଭଉଣୀ

ଆଖି ଥାଇ ଅନ୍ଧ, ପାଦ ଥାଇ ଖଞ୍ଜ । ଆଚ୍ଛା ଭଉଣୀ, ଝିଅ କହୁଛି ସମୁର ଭଉଣୀ ବୋଲି ତା'କୁ କେହି କାମ ଦେବେନି । ଏଇଟା କ'ଣ ସତ ?

କେଉଁଟା ସତ କେଉଁଟା ମିଛ, ତାହା ସୁଜାତା ବା କେମିତି ଜାଣିବେ । ଯେଉଁମାନେ ଏହି ସାମାଜିକ ବ୍ୟବସ୍ଥାରୁ ବିଶ୍ୱାସ ହରାଇଥିଲେ, ସେମାନେ ବର୍ତ୍ତମାନ ନାହାଁନ୍ତି । କିନ୍ତୁ ସେମାନଙ୍କର ପରିବାରଗୁଡାକ ତ ଅଛନ୍ତି ? ସେମାନଙ୍କ ପ୍ରତି ନୀତି ନିୟମ ଥିଲା ଅଲିଖିତ, କିନ୍ତୁ ନିଷ୍ଠୁର ଓ ଫଳପ୍ରଦ । ସେମାନଙ୍କ ପରିବାର ସମ୍ପର୍କରେ କ'ଣ କୌଣସି ଅଲିଖିତ ନୀତି ଅଛି ?

ସେ ସମୟରେ ଦୀର୍ଘ ଅଢ଼େଇ ବର୍ଷ ଧରି ବରାନଗର ଓ କାଶିପୁରକୁ ନିରାପଦ ହେବା ସମୟ ପର୍ଯ୍ୟନ୍ତ ଏମାନଙ୍କ ସମ୍ପର୍କରେ ସମସ୍ତେ ନୀରବ ରହିବାର ଅଲିଖିତ ନୀତି ଅନୁସରଣ କରୁଥିଲେ । ଜାତୀୟ କାର୍ଯ୍ୟକଳାପ ମଧ୍ୟରେ ଟୋକିଓରେ ହାତୀ, ମେଟ୍ରୋରେ ଚିତ୍ରୋତ୍ସବ, ମଇଦାନରେ ଶିଳ୍ପୀ ଓ ସାହିତ୍ୟିକ ସମାରୋହ, ରବୀନ୍ଦ୍ର ସଦନରେ ଏକ ପକ୍ଷବ୍ୟାପୀ କବି ସମ୍ମିଳନୀ - ଏହି ସବୁ କଥା ପଛରେ ଏକ ସୁପରିକଳ୍ପିତ ମନୋଭାବ କାମ କରୁଥିଲା ।

ବିଚଳିତ ହେବା ଦରକାର ନାହିଁ । କାରଣ ସେମିତି ଗୁରୁତ୍ୱପୂର୍ଣ୍ଣ ଘଟଣା କିଛି ଘଟି ନାହିଁ । କେତେ ହଜାର ପିଲା ନାହାଁନ୍ତି ସତ, କିନ୍ତୁ ସେଥିରେ କିଛି ଯାଏ ଆସେ ନାହିଁ । ଆଉ କେଉଁ ମା' ଏପରି ଭାବନ୍ତି କି ନା ସେକଥା କିଏ ଜାଣେ ? କିନ୍ତୁ ସୁଜାତାଙ୍କର କେବଳ ସେଦିନ ନୁହେଁ, ଆଜି ମଧ୍ୟ ମନେ ହୋଇଥିଲା ଯେ କେବଳ ପଶ୍ଚିମବଙ୍ଗରେ ତରୁଣମାନେ ଭୀତ, ତ୍ରସ୍ତ ଏବଂ ବଧ୍ୟ । ଅବଶ୍ୟ ଅନ୍ୟାନ୍ୟ ସ୍ଥାନମାନଙ୍କରେ ଏହାଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ଘଟଣା ଘଟିଛି । ସେମାନଙ୍କର ଅସ୍ତିତ୍ୱ, ଯନ୍ତ୍ରଣା, ମୃତ୍ୟୁ ନିଶ୍ଚିତ ଜାଣି ମଧ୍ୟ ଅଦମନୀୟ ବିଶ୍ୱାସ-ଏ ସବୁକୁ ସମଗ୍ର ଜାତି ଓ ରାଜ୍ୟ ସେଦିନ ଅସ୍ୱୀକାର କରିଥିଲା ।

ଏହି ସମୟରେ ଯାହା ସୁଜାତାଙ୍କୁ ସବୁଠାରୁ ଅଧିକ ଆତଙ୍କିତ କରିଥିଲା , ତାହା ହେଲା, ଏହି ସବୁକୁ ଅସ୍ୱୀକାର କରି ସମଗ୍ର ରାଜ୍ୟବାସୀ ସ୍ୱାଭାବିକତାର ଛଳନା କରିଥିଲେ ଏବଂ କାହା ପାଖରେ ଏହା ଅସ୍ୱାଭାବିକ ମନେ ହୋଇ ନଥିଲା । ଏ ପ୍ରକାର ସ୍ୱାଭାବିକତା ଯେ କେତେ ଭୟଙ୍କର, କେତେ ପାଶବିକ, କେତେ ହିଂସ୍ର, ତାହା ସୁଜାତା ମର୍ମେ ମର୍ମେ ଅନୁଭବ କରିଥିଲେ । ବ୍ରତୀ ପ୍ରଭୃତି ଜେଲ୍‌ରେ ମରିଛନ୍ତି, ରାସ୍ତାଘାଟରେ ମରିଛନ୍ତି; କଳାଭ୍ୟାନ୍‌ର ଧକ୍କା ଖାଇଛନ୍ତି । ଉନ୍ମତ୍ତ ଜନତାଙ୍କ ହାତରେ ମରିଛନ୍ତି । ଅଥଚ ଯେଉଁମାନେ ସମଗ୍ର ଦେଶର ବିବେକ ଭାବେ ଗଣ୍ୟ, ସେମାନେ କେହି ବ୍ରତୀମାନଙ୍କ କଥା କହୁ ନାହାଁନ୍ତି । ସମସ୍ତେ ଏହି ଗୋଟିଏ ପ୍ରସଙ୍ଗରେ ନୀରବ ହୋଇ ରହିଛନ୍ତି ।

ସେମାନଙ୍କର ସ୍ୱାଭାବିକତା ସୁଜାତାଙ୍କୁ ଖୁବ୍ ଭୟଙ୍କର ମନେ ହୁଏ । ଯେତେବେଳେ

ସେ ଦେଖନ୍ତି ଯେ ସେମାନେ ଅତ୍ୟନ୍ତ ସ୍ୱାଭାବିକ, ଉଦାର ଓ ସହୃଦୟ ବୋଲି ନିଜକୁ ମନେ କରନ୍ତି । ବାହାରେ ସେମାନଙ୍କର ଦୂରଦୃଷ୍ଟି ବହୁଦୂର ଯାଏ ପ୍ରସାରିତ, ଅଥଚ ଘରେ ସେହି ଦୃଷ୍ଟି ଅସ୍ୱଚ୍ଛ, ଅସ୍ପଷ୍ଟ ଓ ଝାପ୍‌ସା ।

ଦେଶର କେତେ ହଜାର ଯୁବକଙ୍କୁ ଉପେକ୍ଷା କର । ସେମାନଙ୍କୁ ସଂପୂର୍ଣ୍ଣ ଭାବେ ଉପେକ୍ଷା କଲେ ହିଁ ସେମାନେ ଅସ୍ତିତ୍ୱହୀନ ହୋଇଯିବେ । ଜେଲରେ ଆଉ ସ୍ଥାନ ନାହିଁ । ଦେଶର ହଜାର ହଜାର ତରୁଣ ନିଖୋଜ । ସେମାନଙ୍କୁ ଉପେକ୍ଷା କର । ସେଥିରେ ସେମାନଙ୍କର ଅସ୍ତିତ୍ୱ ମିଳାଇଯିବ ।

କିନ୍ତୁ ସେମାନଙ୍କର ପରିବାରବର୍ଗ ? ସେମାନଙ୍କୁ ଉପେକ୍ଷା କରି ନିଶ୍ଚିହ୍ନ କରିଦେବା ପରି ନୀତି କ'ଣ ସାବ୍ୟସ୍ତ ହୋଇଛି ?

ସୁଜାତା କ'ଣ କହିବେ କିଛି ଭାବି ପାରିଲେ ନାହିଁ । କହିଲେ, ଦେଖନ୍ତୁ-ମୁଁ ତ ଚାକିରି କରିଛି ।

ମୋର ଝିଅଟା କଥା ଭଉଣୀ ଆପଣଙ୍କୁ ଲାଗିଲା । ଆପଣଙ୍କର କେତେ ଚିହ୍ନା ପରିଚୟ ଲୋକ ଅଛନ୍ତି । ଦେଖନ୍ତୁ, ସମସ୍ତଙ୍କ ନାଆଁ ଖବରକାଗଜରେ ବାହାରିଲା କେବଳ ବ୍ରତୀକୁ ଛାଡି । ମୋର ଭଉଣୀ ନା ଚିହ୍ନା ଜଣା ଅଛନ୍ତି ନା ଅଛି ଟଙ୍କାର ଜୋର୍ ।

ସୁଜାତା ଜାଣିଥିଲେ ସମୁର ମା'ଙ୍କ ମନରେ ଏହି ପ୍ରକାର ମନୋଭାବ ଆସିବ । ବୋଧହୁଏ ପ୍ରଚଣ୍ଡ ଆଘାତ, ନିଦାରୁଣ ଶୋକ ସେ ଦୁହିଁଙ୍କୁ କାଣ୍ଟାପୁକୁର ଓ ଶ୍ମଶାନରେ ଏକାତ୍ମ କରିଦେଇଥିଲା ।

କିନ୍ତୁ ସେ ଏକାତ୍ମତା ଚିରସ୍ଥାୟୀ ହୋଇପାରେନା । ସମୟ ଶୋକ ଠାରୁ ବଳବାନ । ଶୋକ ନଦୀତଟ ହେଲେ ସମୟ ହେଉଛି ଜାହ୍ନବୀ । ସମୟ ଶୋକ ଉପରେ କେବଳ ମାଟି ଅଜାଡ଼ି ଚାଲିଥାଏ ।

ଏହାପରେ ଦିନେ ପ୍ରକୃତିର ଅମୋଘ ନିୟମ ଅନୁଯାୟୀ ସମୟର ମାଟି ତଳେ ଚାପି ହୋଇ ଯାଇଥିବା ଶୋକ ଉପରେ ଛୋଟ ଛୋଟ ଆଙ୍ଗୁଳିର ଅଙ୍କୁର ବାହାରେ । ଅଙ୍କୁର ! ଆଶାର, ଦୁଃଖର, ଚିନ୍ତାର, ବିଦ୍ୱେଷର । ଅଙ୍ଗୁଳିଗୁଡିକ ଉପରକୁ ଉଠେ । ସତେ ଯେପରି ଆକାଶକୁ ରାମ୍ପୁଡି ଧରିବ । ସମୟ ସବୁ କିଛିକରି ପାରେ । ସମୟର ପ୍ରଚଣ୍ଡ ପ୍ରତାପ କଥା ଭାବିଲେ ସୁଜାତା ଖୁବ୍ ଭୟ ପାଆନ୍ତି । ହୁଏତ ଦିନ ଆସିବ, ଯେଉଁଦିନ ବ୍ରତୀର ମୁହଁ ଝାପ୍‌ସା ହୋଇ କ୍ରମେ ମଳିନପଡି ଆସିବ ସୁଜାତାଙ୍କ ଚେତନାରେ, ପୁରୁଣା ସ୍ମୃତିପରି, ପୁରୁଣା ଫଟୋ ପରି । ସେଦିନ ସୁଜାତା ସମସ୍ତଙ୍କ ଆଗରେ ବ୍ରତୀର ନାଁ ଯେତେବେଳେ ସେତେବେଳେ ଧରି କାନ୍ଦି ଉଠିବେ ।

ସମୟ ସବୁ କରି ପାରେ । ଦୁଇ ବର୍ଷ ପୂର୍ବେ ତାଙ୍କୁ ଓ ସମୁର ମା'ଙ୍କୁ ଶୋକ ଏକାତ୍ମ

କରି ଦେଇଥିଲା । ସମୀକରଣର ସେ ଅଙ୍କ ସମୟର ହସ୍ତକ୍ଷେପରେ ଲିଭି ଯାଇଛି । ଶୋକର ପ୍ରଚଣ୍ଡ ଆଘାତରେ ସୁଜାତା ଓ ସମୁର ମା'ଙ୍କ ମଧ୍ୟରେ ଥିବା ଶ୍ରେଣୀ ବ୍ୟବଧାନ ଘୁଞ୍ଚି ଯାଇଥିଲା ।

ଆଜି ସମୟ ବିତିଯାଇଛି । ତେଣୁ ସୁଜାତା ଓ ସମୁର ମା'ଙ୍କ ମନ ମଧ୍ୟରେ ପରସ୍ପରର ଶ୍ରେଣୀ ବିଭାଜନ ହୋଇଯାଇଛି ।

ସୁଜାତା ପଚାରିଲେ - ସମୀରଣ (ସମୁ)ର ବଡ଼ ଭଉଣୀ କ'ଣ ପାଶ୍ କରିଛି ?

- ପ୍ରଥମ ଭାଗ ବି.ଏ. ଦେଇଥିଲା । ଦ୍ୱିତୀୟ ଭାଗ ଦେଇଥିଲେ ସେ ଗ୍ରାଜୁଏଟ ହୋଇଥାନ୍ତା । ସେ ଟାଇପ୍ ଶିଖିଛି । ସେଥିରେ ପୁଣି ଅଧାଦିନ ଯିବାକୁ ଚାହେଁନା । କହେ, ଶାଢ଼ୀ ନାହିଁ, ଜାମା ନାହିଁ,ଚପଲ କିଣିବାକୁ ପଇସା ନାହିଁ । ମୁଁ ଯିବିନି । କହେ ତମ ମାନଙ୍କ ପାଇଁ ଏମିତି ଜୀବନ ବିତେଇ ପାରିବିନି । ରାଗରୋଷର କଥା ମ ଭଉଣୀ । ଝିଅଟା ମୋର ଅବିବେକୀ ନୁହେଁ ।

- ମନେ ହୁଏ ନାହିଁ ସମୀରଣ ପାଇଁ ତାର କିଛି ଅସୁବିଧା ହେବ । ତଥାପି ମୁଁ ଦେଖିବି, କାମର ସନ୍ଧାନ ପାଇଲେ ଜଣାଇବି ।

- କଣ କହୁଛନ୍ତି ଭଉଣୀ ଗୋଟିଏ ଜାଗାରେ ଭଲ ଟିଉସନ୍ କରୁଥିଲା; ବନ୍ଦ ହୋଇଗଲା । ଚାଳିଶ ଟଙ୍କା ମିଳୁ ଥିଲା । ଛାତ୍ରର ବାପା କହିଲେ ନା ନା, ତୁମକୁ ମୁଁ ଆଉ ଦରମା ଦେଇ ପାରିବିନି । ତୁମ ଭାଇ ସେ ଦଳରେ ଥିଲା । ସତ କହୁଛି ଭଉଣୀ ।

- ସମସ୍ତେ ତ ସେମିତି ନୁହଁନ୍ତି ।

- ଦେଖିବେ ଭଉଣୀ ! ଏହା ଭିତରେ ସେ ଗୋଟେ ବଡ କାମ କରିଛି । ଛୋଟ ଦୁହିଁଙ୍କୁ ସରକାରୀ ବୋର୍ଡିଂରେ ରଖେଇ ଦେଇଛି । ବାପ ନଥିଲେ ସେମାନଙ୍କୁ ଅନାଥାଶ୍ରମରେ ରଖାଯାଏ ।

- ଭଲ କରିଛି ।

- ଭଉଣୀ, ଝିଅ କହୁଥିଲା, ବ୍ରତୀ ମା' ଯେ ଏଠାକୁ ଆସନ୍ତି ସେଥିପାଇଁ କେତେ ଲୋକ କେତେ ପ୍ରକାର କଥା ପଚାରନ୍ତି । ସେମାନଙ୍କୁ ମାରିଥିବା ଲୋକଙ୍କ ମଧ୍ୟରୁ ଜଣେ ତ କହି ପକେଇଲା ବ୍ରତୀ ମା' ଓ ତୋର ମା ଦୁହେଁ ମିଶି କ'ଣ କରିପାରିବେ ? ଚୁଟୁକ୍ରା ଗାତରେ ହାତୀପାଦ ଥାପୁଛି କାହିଁକି ? ଝିଅ ତ ଏକଥା ଶୁଣି ଭୟରେ କାଠ । ସେ ରାତି ବିକାଳେ ଟିଉସନ ସାରି ଘରକୁ ଫେରେ, ବାଟରେ ବଜାର ସଉଦା କରେ-ଏପରି କଥା କହି ତାକୁ ଡରାନ୍ତି । ସେମାନଙ୍କ ପାଇଁ ଅସାଧ୍ୟ କାମ କିଛି ନାହିଁ ।

- ସେମାନେ......ସେମାନେ ମାନେ.....?

- ହଁ ଭଉଣୀ ! ସେମାନେ ସମସ୍ତେ । ଏବେ ତ ସେମାନେ ସମସ୍ତେ ଦଳ ବଦଳ କରିଛନ୍ତି । କୌଣସି ଦଣ୍ଡ ପାଇଲେନି । ଏବେ ଛାତି ଫୁଲାଇ ଯା'ଆସ କରନ୍ତି । ପୁଣି ଝିଅକୁ ଟିକ୍‌କାରି ମାରି କହନ୍ତି; ତୋର ଭାଇର ଶ୍ରାଦ୍ଧ କଲୁନି କାହିଁକି ,ଶ୍ରାଦ୍ଧରେ ଆମେ ଭଲ କରି ଖାଇଥାନ୍ତୁ । ଭଉଣୀ, ସେମାନେ ରାକ୍ଷସ । ଚାହା ଦୋକାନରେ ସବୁବେଳେ ବସିଥାନ୍ତି ।

ସୁଜାତାଙ୍କ ମନେହେଲା ସେ ଯେତେବେଳେ ବଡ଼ ରାସ୍ତାରୁ ଟ୍ୟାକ୍ସି ବିଦା କରି ରିକ୍ସାରେ ବସି ଏଠାକୁ ଆସନ୍ତି ସେତେବେଳେ ବାଁ ଡାହାଣ କୁଆଡକୁ ଅନାନ୍ତି ନାହିଁ । ଚାହା ଦୋକାନରେ ବିସିଥିବା ଲୋକଙ୍କ ଭିତରୁ କ'ଣ କେହି ବ୍ରତୀର ହତ୍ୟାକାରୀ ? ଏବେ ସେମାନେ ଖୋଲାଖୋଲି ଭାବରେ ବୁଲନ୍ତି । ହୋ ହୋ କରି ହସି ସମୁର ନାନୀକୁ ନିର୍ମମ ଭାବରେ ଥଟ୍ଟା ତାମ୍‌ସା କରନ୍ତି । ଏ କେଉଁ ପ୍ରକାର ସହରରେ ସେମାନେ ବସବାସ କରୁଛନ୍ତି-ଯେଉଁଠି ଏସବୁ ଘଟଣା ସହିତ ପୁଣି ସାଂସ୍କୃତିକ ମେଳା- ରବୀନ୍ଦ୍ରମେଳା ସବୁ କିଛି ନିୟମ ମୁତାବକ ଘଟିଥାଏ ?

ଦଳ ଓ ପତକା ବଦଳାଇ ଘାତକମାନେ ନିଷ୍କୃତ ପାଆନ୍ତି । ଏପଟେ ଜେଲ୍ ପାଚେରୀ ଉଚ୍ଚାରୁ ଆହୁରି ଅଧିକ ଉଚ୍ଚା ହୁଏ, ପାଚେରୀରେ 'ୱାଚ୍ ଟାୱାର' ବସାଯାଏ । ଏସବୁ ଏକ ସାଙ୍ଗରେ ଆଉ କେତେଦିନ ଚାଲିବ ?

ସମୁର ମା' କହିଲେ, ଆପଣ ଭଉଣୀ ଭାଗ୍ୟବତୀ । ଯାହାର ଆଉ ପୁଅ ଅଛି, ସେ ଜଣକୁ ହରାଇ ଅନ୍ୟକୁ ନେଇ ଦୁଃଖ ଭୁଲିପାରିବ । ଅନ୍ୟ ପୁଅକୁ ଛାତିରେ ଜାକି ହରାଇଥିବା ପୁତ୍ର ଶୋକ ପାଶୋରି ପାରିବ । ମୋର କିନ୍ତୁ ଛାତିର ପଞ୍ଜରା ହାଡ ଖସି ଯାଇଛି । ମୋର ମନର ନିଆଁ ମୁଁ ଚିତାରେ ନଯିବା ପର୍ଯ୍ୟନ୍ତ ଲିଭିବ ନାହିଁ ।

ସୁଜାତାଙ୍କର କହିବାକୁ ଇଚ୍ଛା ହେଲା ସମୁ ମା' ପରି ଛାତିଫଟା ଆର୍ତ୍ତ ବିଳାପ କରିପାରିଲେ ସେ ବଞ୍ଚିଯା'ନ୍ତେ । କିନ୍ତୁ ସେ ଯଦି ସମୁ ମା'କୁ କହିବେ ବ୍ରତୀ ପାଇଁ ତାଙ୍କୁ ପଥର ଭାର ସହିବାକୁ ହେଉଛି, ମନଭରି କାନ୍ଦି ପାରୁ ନାହାଁନ୍ତି, ତେବେ ସମୁ ମା' ତାଙ୍କୁ ଅସ୍ୱାଭାବିକ ଭାବି ଅବିଶ୍ୱାସ କରିବେ । ବ୍ରତୀର ମୃତ୍ୟୁ ଖବର ପାଉପାଉ ଯେଉଁମାନେ ଖବର ଚପାଇ ଦେବାକୁ ଦୌଡ଼ା ଦୌଡ଼ି କରୁଥିଲେ ସେମାନଙ୍କ ଆଗରେ ସୁଜାତା କାନ୍ଦି ପାରି ନାହାଁନ୍ତି, ତାଙ୍କ କଣ୍ଠରୋଧ ହୋଇ ଯାଇଥିଲା । ସମୁର ମା' ସେ କଥା ବୁଝି ପାରିବେ ନାହିଁ ।

ସମୁର ବାପା ମା ସେସବୁ କଥା କିଛି ଭାବି ନାହାଁନ୍ତି ? ସେତେବେଳକୁ ରାତି ବାରଟା ବି ବାଜି ନଥିଲା । ସବୁକିଛି ଯେମିତି ଦୁଃସ୍ୱପ୍ନ, ଦୁଃସ୍ୱପ୍ନ ପରି ମନେ ହେଉଥିଲା । ରାତି ବୋଧହୁଏ ବାରଟାରୁ କମ୍, ସେମାନେ ସମୁର ଘରକୁ ଚାରିଆଡୁ ଘେରି ଯାଇଥିଲେ । ଲୋକେ କ୍ରମଶଃ ରୁଣ୍ଡ ହେବା ଦେଖି ସମୁର ମା' ପାଟି କରିବା ପାଇଁ ଯାଉଥିଲେ ହଠାତ୍ ମୁହଁରେ ହାତ ଦେଲେ । ସମୁର ବାପା ଅସହାୟ ହୋଇ କାତର ଭାବେ କହିଥିଲେ, ଏବେ କ'ଣ

କରିବା ? ଯାଏଁ ଦେଖେ ଯଦି ପଛ ଦୁଆର ବାଟେ ପଳେଇଯାଇ ପାରିବେ ।

ସମୁ ଆସ୍ତେ କହିଥିଲା-ବାପା କିଛି ଲାଭ ହେବନି । ସେମାନେ ସେପଟେ ଘେରି ଗଲେଣି । ମୁଁ ଜାଣି ପାରୁଛି ।'

ସେମାନଙ୍କୁ ବାହାରକୁ ବାହାର କରି ଦିଅନ୍ତୁ, ଅସ୍ପଷ୍ଟ, ହିଂସ୍ର ଗଳା ଶୁଣାଗଲା ।

ବାବୁର ସ୍ୱରପରି ଶୁଣାଯାଉଛି, ସମୁର ବାପା କହିଲେ ।

ବାହାର କରୁଛନ୍ତି ନା ନାହିଁ, ପୁଣିଥରେ ସେହି ହିଂସ୍ର ସ୍ୱର । ନହେଲେ ଘରେ ନିଆଁ ଲଗେଇ ଦେବୁ । ସମୁ ବାହାରକୁ ବାହାରି ଆ' । ଠିକ୍ ବାପର ଯଦି ପୁଅ ହୋଇଥିବୁ, ତା'ହେଲେ ବାହାରକୁ ବାହାରି ଆସିବୁ ।

ସମୁ ମୁହଁ ବୁଲାଇ କହିଲା-ମୁଁ ଯଦି ଆଗେ ବାହାରି ପଡିବି ସେମାନେ ପ୍ରଥମେ ମତେ ଧରିବେ । ଏହି ସମୟ ଭିତରେ କ'ଣ ତୁମ ଭିତରୁ ଜଣେ ପଳାଇ ପାରିବ ନାହିଁ ?

- ବାହାରକୁ ଆ' ।

ବ୍ରତୀ ସେତେବେଳେ ସମୁକୁ କହିଲା- କିଛି ଲାଭ ହେବନି । ତୁ ଏକା କାହିଁକି ଯିବୁ, ଆମେ ସମସ୍ତେ ଏକା ସାଙ୍ଗରେ ଯିବା ।

ସବୁ ଦୁଃସ୍ୱପ୍ନ... କେବଳ ଦୁଃସ୍ୱପ୍ନ ।

ବ୍ରତୀ ଆଗେ ଉଠି ଠିଆ ହେଲା । ଝରକା ପାଖକୁ ଯାଇ ପାଟି କରି କହିଲା- ଗାଳି ଦିଅନ୍ତୁନି, ଅପେକ୍ଷା କରନ୍ତୁ ଆମେ ଆସୁଛୁ ।

- ଶଳେ ଆଉ ଜଣକୁ ଜୁଟେଇଛନ୍ତି । ଘଟି (ପଶ୍ଚିମବଙ୍ଗର ଗାଳି)ର ଟୋକା, ବାହାରିଆ' ।

- ସମୁ ଯାଆନାରେ...

- ମା' ତମେ କାନ୍ଦନା । ବାପା ତମେ ମା'ଙ୍କୁ ଟିକେ ଦେଖ, ଆମେ ବାହାରୁଛୁ । ନହେଲେ ସେମାନେ ଘରେ ନିଆଁ ଲଗେଇ ଦେବେ ।

ବିଜିତ୍ ପାଇଜାମା ଶକ୍ତ କରି ବାନ୍ଧିଥିଲା । ହାତ ବୁଲେଇ ଅଲରା ବାଳଗୁଡାକୁ ସଜାଡ଼ି ନେଲା । ପାର୍ଥ କେବେ ବି ବେଶୀ କଥା କୁହେନି । ଏତିକିବେଳେ ପାର୍ଥ କହିଲା- ଚାଲ ବିଜିତ୍ ।

ବିଜିତ ଓ ପାର୍ଥ ପାଖରେ ଟିପା ଛୁରୀ ଥିଲା । ସମୁ ଆଉ ବ୍ରତୀ ଥିଲେ ନିରସ୍ତ୍ର । ସେମାନେ ହଠାତ୍ ଉଠିପଡିଲେ ଓ ହାତକୁ ହାତ ଧରାଧରି ହୋଇ ସ୍ଲୋଗାନ ଦେଉଦେଉ କବାଟ ଖୋଲି ଦେଇଥିଲେ ।

ତୋ'ର ମରଣ ପୂର୍ବରୁ ମୁଁ ମରିଯାଏ କହି ସମୁର ବାପା ଆଗେଇ ଯାଇଥିଲେ, କିନ୍ତୁ

ସମୁ ତାଙ୍କୁ ଭିତରକୁ ଠେଲି ଫୋପାଡ଼ି ଦେଇଥିଲା । ସ୍ଲୋଗାନ ଦେଉ ଦେଉ ସେମାନେ ବାହାରର ଅନ୍ଧକାରକୁ ଚାଲି ଯାଇଥିଲେ । କିଟିକିଟି ଅନ୍ଧାରରେ ଅନେକ ଗୁଡିଏ ଝାପ୍‌ସା ଝାପ୍‌ସା ମୁହଁ ଅଟ୍ଟହାସ୍ୟ, ଉଲ୍ଲାସ ଓ ବିକଟ ଚିତ୍କାରରେ ଚାରିଆଡ଼ ଫାଟି ପଡୁଥିଲା । କ୍ରମେ-ଘରମାନଙ୍କରୁ ଆଲୁଅ ଲିଭି ଯାଉଥିଲା । କବାଟ ଝରକା ସବୁ ଧଡ଼ଧାଡ଼ ହୋଇ ବନ୍ଦ ହୋଇଯାଉଥିଲା । ଭୟ ଚକିତ ମୁହଁ ସବୁ ଦୂରକୁ ଦୂରକୁ ଘୁଞ୍ଚି ଯାଉଥିଲେ । ଦୁର୍ଗା ମେଢ଼ ଭସାଣୀରେ ଯିବା ସମୟରେ ସୁସୁରି ମାରିବା ପରି ଉପରକୁ ଅନାଇ ଏମାନେ ସ୍ଲୋଗାନ ଦେଇ ଛୁରୀ ସିଧା କରି ଧରି ଛୁଟି ଯାଇଥିଲେ । କିଏ ପାଟିକଲା ମାରିପକାଇଲେରେ । ଆର୍ତ୍ତନାଦ-ଶଳା ଛୁରି ଚଲଉଛୁ ? କିଏ କହିଲା-ଧର ଶଳାଙ୍କୁ । ସ୍ଲୋଗାନ, ତିନୋଟି ମୁହଁରେ । ବିଜିତର ବେକକୁ ଆଗରୁ କିଏ ଜଣେ ଫାଶରେ ବେଶ୍ ଦକ୍ଷତାର ସହ ବାନ୍ଧି ପକେଇଥାଏ । ସ୍ଲୋଗାନ, ସ୍ଲୋଗାନ, ସ୍ଲୋଗାନ । ଜିନ୍ଦାବାଦ, ଯୁଗଯୁଗ ଜୀଓ । ଜିନ୍ଦାବାଦ, ଜିନ୍ଦାବାଦ । ଭୟଙ୍କର ଗଣ୍ଡଗୋଳ....ସ୍ଲୋଗାନ ହଠାତ୍ ଥମିଗଲା । ସମବେତ ଘାତକମାନେ ଦୂରକୁ ଚାଲିଗଲେ । ଗୁଳିର ଶବ୍ଦ ଖଟ୍, ଖଟ୍ ; ଶୀତର ଦମକାଏ ବତାସରେ ବାରୁଦର ଗନ୍ଧ । ପବନରେ ବାରୁଦର ଗନ୍ଧ -ଅନ୍ଧକାର ଭିତରେ ସେହି ଦୁର୍ଦ୍ଧାନ୍ତ ମୁହଁଗୁଡା କୁଆଡେ ଉଭେଇଗଲା । ଭୋ ଭୋ କରି କାନ୍ଦି ଉଠି ସମୁର ବାପା ଚିତ୍କାର କରି ଛାତି ବାଡ଼େଇ ତଳେ ପଡ଼ିଯାଇ କହିଲେ-ସମୁରେ ! ଭଉଣୀମାନଙ୍କର ଆର୍ତ୍ତନାଦ, ଭାଇ ଭାଇ ! ସମୁର ମା' ଆଉ କିଛି ଜାଣିପାରି ନାହାଁନ୍ତି । ଅଜ୍ଞାନ ହୋଇ ପଡିଥିଲେ ସେ । ସବୁ ଅନ୍ଧକାର୍ । ଅନ୍ଧକାର, ଅନ୍ଧକାର, ଅନ୍ଧକାର ।

' ସମୁର ମା' କେମିତି ବୁଝିବେ, ସୁଜାତା କାହିଁକି କାନ୍ଦି ପାରନ୍ତି ନାହିଁ । କେମିତି ବିଶ୍ୱାସ କରିବେ ଯେ ତାଙ୍କ ଘରେ ବ୍ରତୀର ନାଁ କେହି କେବେ ହେଲେ ଉଚ୍ଚାରଣ କରନ୍ତି ନାହିଁ । କେମିତି ଏକଥା ଭାବି ପାରିବେ ଯେ ବ୍ରତୀର ନାଁ ଖବର କାଗଜରେ ନବାହାରିବା ପାଇଁ ତା' ବାପା ଆକୁଳ ହୋଇ କେତେ ଲୋକଙ୍କୁ ଧରାଧରି କରିଛନ୍ତି ।

କାହିଁକି ନା ସମୁର ବାପା ନିଜକୁ ବଞ୍ଚେଇବା କଥା ଭାବି ନଥିଲେ । ଏକଥା ଯେ ଚିନ୍ତା କରାଯାଇପାରେ ତାହା ମଧ୍ୟ ସେ ଜାଣି ନଥିଲେ । ଯେଉଁମାନେ ଭାବନ୍ତି, ଭାବିପାରନ୍ତି ସେମାନଙ୍କର ସମକକ୍ଷ କ'ଣ ସମୁର ବାପା ? ସେ ତ ଦରିଦ୍ର ଦୋକାନୀଟିଏ ଯାହାର ଅର୍ଥବଳ ନଥିଲା । ତାଙ୍କର ସେମିତି କୌଣସି ପରିଚୟ ମଧ୍ୟ ନଥିଲା । ଦିବ୍ୟନାଥ ପ୍ରଭୃତି ଏବଂ ସମୁର ବାପାମାନେ ଏହି ଦେଶର ଦୁଇ ମେରୁରେ ବାସ କରନ୍ତି ।

ସମୁର ବାପା ସେତେବେଳେ ଭାବିଥିଲେ ଥାନାବାବୁଙ୍କ ଦ୍ୱାରସ୍ଥ ହେଲେ ସବୁ ମୀମାଂସା ହୋଇଯିବ । ଭୟପାଇ ସମସ୍ତେ ପଳେଇବେ । ତେଣୁ କୌଣସି ପ୍ରକାରେ ପଡ଼ି ଉଠି ସେ ଥାନା ପର୍ଯ୍ୟନ୍ତ ଯାଇଥିଲେ । ଏ ସମୟରେ ଥାନାରେ ରାତିରେ ଦିନ ଭଳି ଆଲୁଅ ଜଳୁଥାଏ । ଚାଲନ୍ତୁ ସାର୍ ! ବର୍ତ୍ତମାନ ଗଲେ ବି ପିଲାମାନେ ବଞ୍ଚିଯିବେ । ବେଶି ଦରକାର ପଡ଼ିଲେ

ତାଙ୍କୁ ହସ୍‌ପିଟାଲକୁ ନେଇଯାଇ ହେବ । ଆପଣଙ୍କ ଗୋଡ଼ ଧରୁଛି ସାର୍, ଆପଣ ଚାଲନ୍ତୁ ।

ଥାନାବାବୁ ବୟସରେ ନହେଲେ ମଧ୍ୟ ଅଭିଜ୍ଞତାରେ ପ୍ରାଜ୍ଞ । ସମୁର ବାପା ଯେତେବେଳେ ଆତତାୟୀମାନଙ୍କ ନାଆଁ ସବୁ କହିଲେ, ସେତେବେଳେ ସେ ଚିହିଙ୍କି ଉଠିଲେ । ସମୁର ବାପା ଅସହାୟ ଜୀବଟିଏ ପରି ଦିଶୁଥିଲେ । ଏ ସଂସାରରେ ସେ କେଞ୍ଚୁଆ ଜିଆନାଡ଼ ପରି; ଯାହାକୁ ସମସ୍ତେ ପାଦତଳେ ଦଳି ଦେଇଯା'ନ୍ତି । ସେ ଭୟରେ ଚୁପ୍ ହୋଇ ଯାଇଥିଲେ ଓ ପୁଣିଥରେ ବିକଳ ଭାବେ କାନ୍ଦି ଉଠିଥିଲେ । ମୁଁ ସ୍ୱଚକ୍ଷୁରେ ଦେଖିଛି । ସ୍ୱର ମଧ୍ୟ ଶୁଣି ପାରିଛି ।

- ନା ସ୍ୱର ଶୁଣିପାରି ନାହାଁନ୍ତି ।

- ଚାଲନ୍ତୁ ସାର୍ ,!

- ଯିବ, ଭ୍ୟାନ୍ ଯିବ ।

ଠିକ୍ ଏତିକିବେଳେ ସମୁର ବାପା ଥାନାର ଆଉ ଜଣେ ବାବୁଙ୍କୁ ଦେଖି ଚିହ୍ନି ପାରିଥିଲେ ଓ ଭୋ ଭୋ ହୋଇ କାନ୍ଦି ଉଠି ତାଙ୍କ ପାଦ ଧରି ପକାଇଥିଲେ । ଏହାର କିଛି ସମୟ ପରେ ଗୋଟିଏ ଭ୍ୟାନ୍ ଆସି ପହଞ୍ଚିଲା । ବାପା ଭ୍ୟାନ୍‌ରେ ଯାଇ ବସିଲେ । କଲୋନୀ ଭିତରେ ପହଞ୍ଚି ନ ପହଞ୍ଚୁଣୁ ପାଗଳଙ୍କ ଭଳି କହି ଉଠିଲେ, ସମୁରେ ସମୁ ! କଥା ଟିକେ କହରେ ବାପା ! ସମୁରେ ! ଅଥୟ ହୋଇ ସେ କହିଲେ ।

ଆଶ୍ଚର୍ଯ୍ୟର କଥା, ଭ୍ୟାନଟିକୁ କୌଣସି ନିର୍ଦ୍ଦେଶ ଦିଆଯାଇ ନଥିଲେ ମଧ୍ୟ ଠିକ୍ ଫୁଟ୍‌ବଲ୍ ପଡିଆକୁ ଭ୍ୟାନ୍ ଚାଲି ଯାଇଥିଲା । ଦୂରରୁ ଭ୍ୟାନ୍‌ର ଆଲୁଅ ପଡିବାରୁ ଘାତକମାନେ ଘୁଞ୍ଚି ଯାଇଥିଲେ । କେହି ଯେପରି ଲୁଚି ପଳାଇଯାଇଥିଲେ । ଭ୍ୟାନ୍ ଆଲୁଅରେ କେତେଗୁଡିଏ ମୁହଁ ଧରା ପଡିଯାଇଥିଲା । ଭ୍ୟାନ୍‌ର ଗତି କେଜାଣି କାହିଁକି କମିଯାଇଥିଲା । ଭ୍ୟାନ୍ ଯେତେବେଳେ ପହଞ୍ଚିଲା ସେତେବେଳେ ଆଉ କେହି ନଥିଲେ । ସମସ୍ତେ କିଏ କୁଆଡେ ପଳେଇ ଯିବାର ସୁଯୋଗ ପାଇଥିଲେ । ପାଖକୁ ଯିବାରୁ ଭ୍ୟାନ୍ ଠିଆ ହେଲା ଓ ଭ୍ୟାନ୍‌ର ଆଲୁଅ ବିଜିତ ଉପରେ ସିଧାସଳଖ ଯାଇ ପଡ଼ିଲା ।

ସମୁର ବାପାଙ୍କ ଟର୍ଚ୍ଚ ଆଲୁଅ ଯାଇ ଯାହା ଉପରେ ପଡ଼ିଲା ତାକୁ ଦେଖି ସେ ଚିତ୍କାର କଲେ, ତା'ପରେ ସମୁ ! ଏତିକି କହି ସେ ଟଳି ପଡିଥିଲେ । ଦେଖିବାକୁ ପାଇଲେ ସମୁର ଗୋଡ଼ ଟାଣି ସେମାନେ ଘୋଷାରି ଘୋଷାରି ଆଗକୁ ନେଇ ଯାଉଛନ୍ତି । ଭ୍ୟାନ୍‌ର ଖୋଲୁଥିବା ଦୁଆରଟା ବିରାଟକାୟ କ୍ଷୁଧିତ ଜାନ୍ତବର ମୁଖଗହ୍ୱର ପରି ବଡରୁ ବଡ଼ ହେଉଥିଲା । ସତେ ଯେମିତି ସେ ସମୁକୁ ଗିଳି ଦେଲା । ସମୁର ମୁଣ୍ଡ କେଉଁଠି ଗୋଟେ ପଟେ ପିଟି ହୋଇଗଲା । ଅଜ୍ଞାନ ହେବା ପୂର୍ବରୁ ସମୁର ବାପା କହିବାକୁ ଚେଷ୍ଟା କରୁଥିଲେ ଆସ୍ତେ, ତା'ମୁଣ୍ଡ ବାଜିବ । କିନ୍ତୁ କହି ପାରିଲେ ନାହିଁ । ସମୟ ସେତେବେଳେ ତିନିଟା ବାଜି ପନ୍ଦର ମିନିଟ୍ । ଏତେ

ଶୀଘ୍ର ଭ୍ୟାନ୍ କେବେହେଲେ ଆସେ ନାହିଁ ।

ସବୁ ଶେଷ ହୋଇଯିବା ପରେ ସେ ପୁଣିଥରେ ଥାନାକୁ ଯାଇଥିଲେ । ତାଙ୍କର ଜମାନବନ୍ଦୀ ଲେଖା ହୋଇନାହିଁ ବୋଲି ସେ ଜାଣିଥିଲେ । ଥାନାବାବୁଙ୍କ କଥା ଲାଲବଜାରରେ ମଧ୍ୟ କହିବାକୁ ଥିଲା, କିନ୍ତୁ କେଉଁଠି କିଛି ଲାଭ ହେଲା ନାହିଁ । ହେ ଭଗବାନ, ଏ ଦେଶରେ ଯେ ବିଚାର ନାହିଁ-କହି ସେ ଫୁଟ୍‌ପାଥ୍‌ରେ ମୁଣ୍ଡ ପିଟିଲେ । ତାଙ୍କ ଶଳାର ପୁଅ ତାଙ୍କୁ ଧରି ଘରକୁ ଆଣିଥିଲା ।

ସମୁର ମା' କେମିତି ବୁଝିବେ ସୁଜାତାଙ୍କ କଥା ? ସେ ଯଦି କହନ୍ତି ବ୍ରତୀ, କେବଳ ବ୍ରତୀ ତାଙ୍କ କୋଳରେ ମୁଣ୍ଡ ରଖି ଶୋଇ ପଡୁଥିଲା, ତାଙ୍କ କାନ୍ଧରେ ହାତ ରଖି କଥା କହୁଥିଲା । କହୁଥିଲା ମା' ମୋ ପିଠିରେ ଟିକେ ସାବୁନ୍ ଲଗେଇ ଘଷି ଦେଲ । ହେମ ପୁଣିଥରେ ଥଣ୍ଡା ଚା' ଦେଇଛି । ମା' ଆଜି ବ୍ୟାଙ୍କ୍‌ରୁ ଫେରିଲେ ତମେ ଆଉ ମୁଁ ସିନେମା ଯିବା । ଆଜି ପୁଣି ଖାତାଟା ଫେରେଇବାକୁ ହେବ, ନୋଟ୍‌ଟା ଟିକିଏ କପି କରି ଦିଅ ମା' । ସମୁର ମା' ଭାବିବେ ଏମିତି ତ ସବୁ ପିଲାଏ ସବୁ ମା'ଙ୍କୁ କହିଥାନ୍ତି, ଏଥିରେ ଅଧିକା କଥା କ'ଣ ରହିଲା ?

ସୁଜାତା ଯଦି କହନ୍ତି-ସେ ଚେରହୀନ, ମାଟିହୀନ ଜୀବନ ବିଚ୍ୟୁତ ସମାଜରେ ବାସ କରନ୍ତି, ସେ ସମାଜରେ ନଗ୍ନ ଶରୀର ଲଜ୍ଜାର ବିଷୟ ନୁହେଁ ବରଂ ସହଜ ଆବେଗ ବ୍ୟକ୍ତ କରିବା ଲଜ୍ଜାକର । ଯଦି କହନ୍ତି-ସେ ସମାଜରେ ମା-ପୁଅ, ବାପ-ପୁଅ, ସ୍ୱାମୀ-ସ୍ତ୍ରୀ ପ୍ରତ୍ୟେକଟି ସମ୍ପର୍କ ବିଷାକ୍ତ ହୋଇ ଯାଇଥିଲେ ସୁଦ୍ଧା କେହି କାହାକୁ ମାରନ୍ତି ନାହିଁ, ଛାତି ଫଟେଇ କାନ୍ଦନ୍ତି ନାହିଁ, ପରସ୍ପର ସହିତ ମଧୁର ଓ ମାର୍ଜିତ ବ୍ୟବହାର କରିଥାନ୍ତି, ତା'ହେଲେ ସମୁର ମା' ବୁଝି ପାରିବେନି ସୁଜାତା ପ୍ରକୃତରେ କ'ଣ କହିବାକୁ ଚାହାଁନ୍ତି । ଭାଷାଟା ବଙ୍ଗଳା ହେଲେ ମଧ୍ୟ ଭାଷାରେ ଥିବା ଅନ୍ତରର ବକ୍ତବ୍ୟ ସମୁର ମା' ବୁଝି ପାରିବେନି ।

ସୁଜାତା ଯଦି କହନ୍ତି-ବ୍ରତୀକୁ, ତାଙ୍କର ମୃତ ସନ୍ତାନକୁ ବୁଝିବା ପାଇଁ ସେ ଏଠିକି ଆସନ୍ତି; ସେକଥା ମଧ୍ୟ ସମୁର ମା ବୁଝିପାରିବେ ନାହିଁ । ବ୍ରତୀ ଯେତେବେଳେ ବଦଳି ଯିବାକୁ ଆରମ୍ଭ କରେ; ସେ କିଛି ବହି ପଢ଼ି ବା ବଡ଼ ବଡ଼ କଥା ଶୁଣି ବଦଳି ଯାଇନି । ସମୁ ପରି ଦରିଦ୍ର ବାପା ମା'ର ସନ୍ତାନ, ଲାଲ୍‌ଟୁ ପରି ଭାଗ୍ୟଦ୍ୱାରା ବିଡମ୍ବିତ ଅପମାନିତ ଯୁବକ ଏମାନଙ୍କର ଓ ଅନ୍ୟ ମଣିଷମାନଙ୍କ ଜୀବନର ଜ୍ୱାଳା ନିଜ ରକ୍ତମାଂସରେ ଅନୁଭବ କରିବା ଦ୍ୱାରେ ହିଁ ବ୍ରତୀ ବଦଳି ଯାଇଥିଲା । ଜୀବନ ହିଁ ତାକୁ ବଦଳି ଯିବାକୁ ବାଧ୍ୟ କରିଥିଲା । ତେଣୁ ସେ ତା'ର ନିର୍ଦ୍ଦିଷ୍ଟ ଜୀବନଟାକୁ ତ୍ୟାଗ କରିଥିଲା । ସେ ଜୀବନରେ ରହିଥିଲେ ବ୍ରତୀ ହୁଏତ ବିଦେଶ ଯାଇଥାନ୍ତା, ଫେରିଥାନ୍ତା, ବଡ଼ ଚାକିରି କରିଥାନ୍ତା, ଉଠିଯାଇଥାନ୍ତା ଅତି ସହଜରେ ସମାଜର ଉପର ସ୍ତରକୁ ବିନା ପ୍ରଚେଷ୍ଟାରେ ।

ସେ କଥା ମଧ୍ୟ ସମୁର ମା' ବୁଝି ପାରିବେ ନାହିଁ । କାହିଁକି ନା ସମୁର ମା' ଏବେ

କହିଲେ, ଆପଣଙ୍କ ପୁଅର ମୁହଁଟା ମୋ ଆଖି ଆଗରେ ନାଚି ଯାଉଛି । ଯିଏ ସର୍ବହରା ସେମାନେ ଏପରି ତୁଚ୍ଛାକୁ ଡିଅଁନ୍ତି । ସମ୍ମୁ ପିଲାଦିନୁ କହୁଥିଲା ଆମେ କ'ଣ ଭିକାରୀ ହେଇଛୁ ଯେ ଯାହା ସମସ୍ତେ ପାଇବା ପାଇଁ ହକ୍‌ଦାର ତାକୁ ଭିକ୍ଷା କରି ପାଇବୁ ଓ ଗୋଇଠା ମାଡ଼ ଖାଇବୁ ? କିନ୍ତୁ ବ୍ରତୀର ତ ସବୁକିଛି ଥିଲା ଭଉଣୀ, ସେ କାହିଁକି ମରିବାକୁ ଆସିଥିଲା ?

- ସେମାନଙ୍କୁ ସାବଧାନ କରିବାକୁ ଆସିଥିଲା ।

- ଆପଣ ତ ଜାଣିଥିଲେ ପିଲାମାନେ କେଉଁ ରାସ୍ତାରେ ଯାଉଛନ୍ତି । ଆପଣ ତାକୁ ସାବଧାନ କଲେନି କାହିଁକି ?

ସମ୍ମୁର ମା ଜାଣନ୍ତି ନି ଆଜି ସେ ବିଜୟିନୀ, କାହିଁକି ନା ସେ ଜାଣିଥିଲେ ସମ୍ମୁ କ'ଣ କରୁଥିଲା । ସୁଜାତାଙ୍କର ଉନ୍ନତ ଗ୍ରୀବା, ଅଭିଜାତ ଚେହେରା, ମଣିବନ୍ଧର ଘଡି, ଦାମୀ ତନ୍ତୁବୁଣା ଶାଢ଼ୀ ଥାଇପାରେ କିନ୍ତୁ ସମ୍ମୁର ମା ଜାଣନ୍ତିନି ସୁଜାତା କେତେ ହଜାର ଜନନୀଙ୍କ ମଧ୍ୟରୁ ବହୁ ଲୋକଙ୍କ ପାଖରେ ପରାଜିତ । କାରଣ ସେ ଜାଣି ନଥିଲେ ଯେ ବ୍ରତୀ କ'ଣ କରୁଛି ।

ଜୟରେ, କି ପରାଜୟରେ ସୁଜାତା ମିଛ କଥା କହି ପାରନ୍ତିନି ।

ବ୍ରତୀ ଜାଣିଥିଲା ।

ସୁଜାତା କହିଲେ - ମୁଁ ଜାଣି ନଥିଲି ।

ଜାଣିଶୁଣି କ'ଣ ପିଲାଙ୍କୁ କେହି ମରଣ ମୁହଁକୁ ପଠାଏ ?

ସୁଜାତା ଉଠି ଠିଆ ହେଲେ ।

- ପୁଣି ଆସିବେ ଭଉଣୀ । ଆପଣଙ୍କ ସାଙ୍ଗେ କଥାବାର୍ତ୍ତା କଲେ ଖୁବ୍ ଶାନ୍ତି ମିଳେ । ସୁଜାତା ମନେମନେ ଠିକ୍ କଲେ ସେ ଆଉ ଆସିବେ ନାହିଁ ।

- ଆସୁଛି ।

ସହସା ସମ୍ମୁର ମା'ଙ୍କ ଦେହରେ ହାତ ରଖିଲେ ସୁଜାତା । କହିଲେ ଆପଣଙ୍କୁ ମୋର କୃତଜ୍ଞତା ଜଣାଉଛି ।

- କୃତଜ୍ଞତା କ'ଣ ? ଦୁଃଖୀ ବୁଝେ ଦୁଃଖର ବ୍ୟଥା ।

ଆଜି ଶେଷ ବିଦାୟ ମୁହୂର୍ତ୍ତରେ ସମ୍ମୁର ମା'ଙ୍କୁ ସୁଜାତା କିଛି ଦାମୀ ଉପହାର ଦେବେ ବୋଲି ଠିକ୍ କଲେ । ଇଚ୍ଛା ହେଲା, ନିଜ ଭିତରର ଶୋକାର୍ତ୍ତ କାରାଗାର ମଧ୍ୟରୁ କିଛି ଗୋଟେ ଦେଇଯିବେ ସମ୍ମୁର ମା'ଙ୍କୁ । ସେଥିପାଇଁ ଯେଉଁ କଥା ସେ ଉଚ୍ଚାରଣ କରି ପାରନ୍ତି ନାହିଁ, ସେହି କଥାଟିକୁ ଆଜି କହିଲେ ''ଯେଉଁଦିନ ସେମାନେ ମଲେ, ତା'ପରଦିନ ବ୍ରତୀର ଜନ୍ମଦିନ ଥିଲା । ସତର ତାରିଖରେ ତାକୁ କୋଡ଼ିଏ ପୁରି ଏକୋଇଶ ଚାଲିଥାନ୍ତା ।''

❑❑❑

# ॥ ଅପରାହ୍ନ ॥

ଘରଟି ତାଙ୍କ ଘରର ଖୁବ ପାଖରେ । ଯିବା ଆସିବା ରାସ୍ତାରେ ସୁଜାତା ଏହି ଘରଟିକୁ , ଅନେକ ଥର ଦେଖିଛନ୍ତି । ତେବେ ଭିତରକୁ ଯାଇ ନାହାଁନ୍ତି ! କାହା ଘର, ଏକଥା ମଧ୍ୟ ଜାଣନ୍ତି ନାହିଁ । ପୁରୁଣା ଅମଳର ଦୋ'ତାଲା ଘର, ସାମ୍ନାରେ ଲମ୍ବା ବାରଣ୍ଡା । ଘର ଉପରେ ମେଗ୍ରୋ ନକ୍ସା । ସମ୍ଭବତଃ ମାଲିକଙ୍କ ଗାଁ ନାଁ ଅନୁସାରେ ଘରର ନାମକରଣ ହୋଇ ଲେଖା ହୋଇଛି 'ପୂର୍ବ ଗଙ୍ଗାନଗର' । ସୁଜାତାଙ୍କ ଆଖି ଆଗରେ କୋଡିଏ ବର୍ଷର ଗୃହଟିର ରୂପ କଲିକତା ନଗରୀ ପରି ଲାଗିଥିଲା । କିଛି ଅଂଶ ନୂଆ ଚକ୍‌ଚକ୍ ଏନାମେଲ ରଙ୍ଗରେ ଉଜ୍ଜ୍ୱଳ, ଝରକାରେ 'ଏଆର କୁଲାର' (air cooler) । ଆଉ କେତେକାଂଶ ପଲସ୍ତରା ଖସିଯାଇଛି-ଝରକାରେ କଟା ଶାଢ଼ୀର ମଇଳା ପର୍ଦ୍ଦା । ଏକତାଲାର ରାସ୍ତାକୁ ମୁହଁ କରିଥିବା ଘରେ ଲଣ୍ଡ୍ରୀ,ହୋମିଓପାଥି ଔଷଧ ଦୋକାନ, ରେଡିଓ ମରାମତିର ଦୋକାନ । ଧାଡ଼ିଧାଡି ହୋଇ ଐଶ୍ୱର୍ଯ୍ୟ ତଥା ଦାରିଦ୍ର୍ୟର ଅପୂର୍ବ ଭାଗ ବଣ୍ଟୁଆରା, ଏହା ସୁସ୍ପଷ୍ଟ ।

ଅନ୍ଧାରୁଆ ରାସ୍ତା ପାରି ହେଲେ ଅଗଣା ପାଖରେ ଗୋଟିଏ ବଡ ବଖରା । ଘରର ପଛପଟ ଏଇଟା । ଦୁଆର ମଝିରେ ଅଯତ୍ନରେ ବଢ଼ିଥିବା ଗୋଟିଏ ଆତ ଗଛ । ଘରର କାନ୍ଥ ଓ ଛାତ ତଥା ମେଜିଆରୁ ସିମେଣ୍ଟ ଛାଡ଼ିଯାଇଛି । ଗୋଟିଏ ବଡ଼ ଖଟ, ମଇଳା ଓ ଅବ୍ୟବହୃତ ଆଇନ୍ ବହିରେ ଆଲମାରୀଟି ଭର୍ତ୍ତି । ଆଲମାରୀର ତଳ ଜଙ୍ଗ ଧରିଯାଇଛି । ସୁଜାତା ଖଟ ଉପରେ ବସିଥିଲେ । ତାଙ୍କ ସାମ୍ନାରେ ମୋଡା ଉପରେ ନନ୍ଦିନୀ ।

ବିଶ୍ୱାସଘାତକତା କରିଥିଲା ଅନିନ୍ଦ୍ୟ । ଆଉଥରେ ନନ୍ଦିନୀ କହିଲା, ପୂର୍ବରୁ ଏକଥା ସେ କହିଛି, ଏବେ ଯେତେବେଳେ କହିଲା ଆଖିରେ ତା'ର ସାମାନ୍ୟ ବିସ୍ମୟ, ଭାସମାନ ମେଘର ଅସ୍ଥାୟୀ ଛାୟା ଭଳି ଚାଲିଗଲା । ସେ ଯେପରି ବର୍ତ୍ତମାନ ସୁଦ୍ଧା ପୁରା ବିଶ୍ୱାସ କରିପାରୁ ନଥିଲା, ଅଥବା ଭାବି ପାରୁ ନଥିଲା ଏହି ବିଶ୍ୱାସଘାତକତା ଫଳରେ ସମ୍ଭୁ ପ୍ରଭୃତିଙ୍କ ଜୀବନ ଯାଇପାରେ ଅଥଚ ଏହା ଜାଣି ମଧ୍ୟ ଅନିନ୍ଦ୍ୟ ଏ କାମ କରିପାରିଲା କେମିତି ?

- ମୁଁ ସବୁ କଥା ଜାଣେ ନାହିଁ ନନ୍ଦିନୀ ।

ଆପଣମାନେ କୌଣସି ଦିନ କୌଣସି କଥା ଜାଣନ୍ତି ନାହିଁ । ଯାହା ହୁଏ -ସବୁ ଯେପରି ଗୋଟାଏ ଗୋଟାଏ ଘଟଣା ମାତ୍ର । କାହିଁକି ଘଟେ ? କ'ଣ ପାଇଁ ଘଟେ...ନ ଜାଣିଲେ ମଧ୍ୟ ଚଳିଯାଏ ଏକଥା, ଏ ବିଶ୍ୱାସ ଯେ କେତେ ଭୁଲ ତାହା ଏବେ ଜାଣି ପାରୁଛନ୍ତି ତ ?

ସୁଜାତା ନିରୁତ୍ତର ରହିଲେ ।

ଅନିନ୍ଦ୍ୟ ବିଶ୍ୱାସଘାତକ । ବ୍ରତୀ ନିର୍ଘାତ ବୋକା, ସେ ଅନିନ୍ଦ୍ୟକୁ ବିଶ୍ୱାସ କରିଥିଲା । ତା'ର କାରଣ ଅନିନ୍ଦ୍ୟକୁ ଆଣିଥିଲା ବ୍ରତୀର ବନ୍ଧୁ ନିତୁ । ନିତୁ ଜରିଆରେ ଆସିଥିବା ପିଲାକୁ ଅବିଶ୍ୱାସ କରାଯାଇ ପାରେନା । ବ୍ରତୀ ତାହାହିଁ ଭାବିଥିଲା । କାରଣ ନିତୁ ଥିଲା ବ୍ରତୀର ବନ୍ଧୁ । ନିତୁ କ'ଣ ଜାଣିଶୁଣି ଅନିନ୍ଦ୍ୟକୁ ଆଣିଥିଲା ? ସୁଜାତା ମନେ ମନେ ଭାବିଲେ ।

ଅନେକ ଦିନ ନିର୍ଜନ ଜେଲ କୋଠରୀରେ ଆବଦ୍ଧ ରହିଲେ ମନୁଷ୍ୟର ମନ ବୋଧହୁଏ ଅତ୍ୟନ୍ତ ଅନୁଭୂତି ପ୍ରଖର ହୋଇଯାଏ । କାରଣ ଏହି ନିଭୃତ କୋଠରୀ ଏକାକୀ, ବଡ଼ ନିର୍ଜନ- ସେଠାରେ ଚାରିକାନ୍ଥ ଭିତରେ ଲୁହା କବାଟ ଓ କାନ୍ଥରେ ଏକ କଣା- ମଣିଷ ନିଜ ସହିତ ଏକବାରେ ନିଃସଙ୍ଗ ଜୀବନ କଟାଏ । ସବୁବେଳେ ମନକୁ ଶବ ବ୍ୟବଚ୍ଛେଦ କରୁଥିବା ଡାକ୍ତରଙ୍କ ଛୁରୀ କିମ୍ବା ବନ୍ଧୁକର ସଙ୍ଗିନ ଓ ଶାଣିତ ମୁନ, ଯାହାଦ୍ୱାରା ବର୍ହିଜଗତକୁ ଏକାଗ୍ରତା ସହକାରେ କଣାକରି ନିର୍ଜନ କୋଠରୀର ମଣିଷ ଜାଣିବାକୁ ଚାହେଁ କେଉଁମାନେ ତାକୁ ମନେ ରଖିଛନ୍ତି । ମଝିରେ ମଝିରେ କବାଟ ଖୋଲିଯାଏ । ସେତେବେଳେ ତାକୁ ଯୁଆଡେ ନିଆଯାଏ ସେ ସ୍ଥାନ ତା'ର ଆକାଂକ୍ଷିତ ବର୍ହିଜଗତ ନୁହେଁ । ସେ କୋଠରୀ ଅନ୍ୟ ରକମର । ଶବ୍ଦରୋଧକ ଘର । ଝରକା କବାଟରେ ପଶମ ମୋଡା ଲଗାଯାଇ ଫମ୍ପା ରବରନଳୀ ଦ୍ୱାରା ଶବ୍ଦରୋଧକ କରାଯାଇଛି । ଘର ଭିତରର ଆର୍ତ୍ତଚିତ୍କାର, ବେଦନାହତ ସ୍ୱର, ମାଡ଼ର ଶବ୍ଦ, ଜେରା କରୁଥିବା ବ୍ୟକ୍ତିର ଗର୍ଜନ ତର୍ଜନ ଆଦି ସବୁ ପ୍ରକାର ଶବ୍ଦ ଏହି ରବର ନଳୀ ପାଇଁ ଘର ଭିତରେ ଆବଦ୍ଧ ରୁହେ । ଯାହାକୁ ଜେରା କରାଯାଏ ତା' ଆଖି ଉପରେ ହଜାରେ 'ୱାଟ'ର (watt) ର ଆଲୁଅ ପକାଯାଏ । ଜେରାକାରୀ ଥାଏ ଅନ୍ଧାରରେ । ସେ ସିଗାରେଟ୍ ଖାଇବାକୁ ଅଭ୍ୟସ୍ତ ଥାଉ କି ନଥାଉ ହାତରେ କିନ୍ତୁ ଧରିଥାଏ ଜ୍ୱଳନ୍ତ ସିଗାରେଟ୍ । ଆଉ ଏହି ଭଦ୍ର ଜେରାକାରୀ ବ୍ୟକ୍ତି ଅତ୍ୟନ୍ତ ନରମ ଗଳାରେ ଭଦ୍ର ଭାବରେ ପ୍ରଶ୍ନ କରେ 'ଓ ଆପଣ ଚାଟାର୍ଜୀର ବନ୍ଧୁ' ଏବଂ କଥା କହିବା ସଙ୍ଗେ ସଙ୍ଗେ ହଜାରେ ୱାଟ ଦ୍ୱାରା ଉଦ୍‌ଭାସିତ ମୁହଁରେ ଜ୍ୱଳନ୍ତ ସିଗାରେଟ୍‌କୁ ମାଡ଼ି ଦିଏ ! ସିଗାରେଟ୍ ଚେଙ୍କା ଦ୍ୱାରା କେବଳ ଚମର ଉପରି ଭାଗରେ କ୍ଷତ ହୁଏ,- ମୁହଁର ଚମଡ଼ା ପୋଡ଼ିଯାଏ । ସେହି ପୋଡ଼ା ଘା ମଲମ ଦ୍ୱାରା ଭଲ ହୁଏ । କ୍ଷତ ଶୁଖିଯାଏ । ଉପର ପୋଡା ଚମଡ଼ା କିଛି ଦିନ ଭିତରେ ଶୁଖେ, ରହିଯାଏ କେବଳ ତରୁଣର ହୃଦୟରେ ପ୍ରତ୍ୟେକଟି ପୋଡା ଘା ଓ ସବୁଦିନ ପାଇଁ କ୍ଷତ ଚିହ୍ନ । ତା'ପରେ ପୁନର୍ବାର ନିର୍ଜନ କୋଠରୀ । ସଂପୂର୍ଣ୍ଣ ନିଃସଙ୍ଗ ଜୀବନ ।

ଏକା ରହିଲେ ମନଟା ଅନୁଭୂତି ପ୍ରଖର ହୋଇଥାଏ ଠିକ୍ । ଶବ ବ୍ୟବଚ୍ଛେଦ କରୁଥିବା ଡାକ୍ତରଙ୍କ ଛୁରୀ, ଅଥବା ବନ୍ଧୁକର ଫଳକ ପରି ତୀକ୍ଷ୍ଣ, ଶାଣିତ ଏବଂ ଏକାଗ୍ର । ସେଥି ପାଇଁ ନନ୍ଦିନୀ ବୁଝିପାରିଲା ସୁଜାତା ନୀରବରେ ପ୍ରଶ୍ନ କରୁଛନ୍ତି । ନିତୁ ଜାଣିଶୁଣି ଅନିନ୍ଦ୍ୟକୁ ଆଣିଥିଲା ନା ନାହିଁ ?

ନନ୍ଦିନୀ କହିଲା, ନିତୁ ଅନିନ୍ଦ୍ୟକୁ ଜାଣିଶୁଣି ଆଣିଥିଲା ନା ନାହିଁ-ସେ କଥା ଆଉ

କେବେ କେହି ଜାଣି ପାରିବେ ନାହିଁ । ନିତୁର କ'ଣ ହୋଇଥିଲା ଜାଣନ୍ତି ?

ନା' ।

ନିତୁର ଅନେକ ଛଦ୍ମନାମ ଥିଲା । ଅନେକ ଗୁଡ଼ିଏ ନାଁ । ବ୍ରତୀ ପ୍ରଭୃତି ନିର୍ଣ୍ଣିହ୍ନ ହେବା ପରେ ଅସମ୍ଭବଭାବେ ତଲାସି ହେଲା । ତା' ଅଞ୍ଚଳରେ ସେ ଦୀପୁ ବୋଲି ପରିଚିତ ଥିଲା । ନିତୁ ସେହି ଅବସରରେ ପଳାଇ ଥିଲା ଏବଂ ବେଶୀ ଦୂର ଯାଇ ପାରିନଥିଲା । ପାଖାପାଖି ଶିଳ୍ପାଞ୍ଚଳ । ସେଠାରେ ତାକୁ ଅନ୍ୟ ଜଣେ ଭାବି ସେ ଅଞ୍ଚଳର ପୋଲିସ୍ ଧରିଲା । ସେତିକିବେଳେ ତା' ଅଞ୍ଚଳର ଥାନା ବାବୁ ଯାଇ ପହଞ୍ଚନ୍ତି । ତାଙ୍କର ସେତେବେଳେ ସେଠାକୁ ଯିବା କଥା ନୁହେଁ । କିନ୍ତୁ ଖବର କାଗଜ ଆମ ସହ ଧୋକାବାଜ କରିଥିଲା । କେଉଁ ସ୍ଥାନ ସୁରକ୍ଷିତ, ଡାକ୍ତରଖାନାର କି ପ୍ରକାର ବ୍ୟବସ୍ଥା, କେଉଁ ଗାଁରେ କାମ ଚାଲିଛି-ଏ ସବୁ ଖବର ସେମାନେ ମଝିରେ ମଝିରେ ଛାପୁଥିଲେ । ଏ ସଂପର୍କରେ ବିଶେଷ ଲେଖା ଲେଖୁଥିଲେ । ସେହିପରି ଏକ ଖବର ବାହାରିବା ପରେ ଥାନାବାବୁ ସେ ଅଞ୍ଚଳକୁ ଯାଇଥିଲେ । ଚା'ପିଇବା ପାଇଁ ଏବଂ ଗୁଡ ନେବା ପାଇଁ ଜିପ୍ ଅଟକାଇ ଥିଲେ ।

- ଗୁଡ଼ ନେବା ପାଇଁ ?

- ହଁ ସେଠାର ଆଖୁ ଗୁଡ଼ ପ୍ରସିଦ୍ଧ । ତାଙ୍କ ପାଇଁ ଦୁଇ ହାଣ୍ଡି ଗୁଡ଼ କିଣା ହୋଇ ରଖା ହୋଇଥିଲା । ସେ ଭିତରକୁ ପଶିବା ମାତ୍ରେ ନିତୁକୁ ଦେଖି କହିଲେ, ଦୀପୁ ତୁ ? ନିତୁ ସେତେବେଳେ ଭୟରେ, ଜେରାର ଆଘାତରେ ମାଡ଼ ଖାଇ ଖୁବ ଛାନିଆଁ ହୋଇ ପଡିଥିଲା । ତା' ମୁହଁରୁ ବାହାରିଗଲା.....ହଁ ଦେଖନ୍ତୁନା ଏମାନେ ମତେ ଧରି ଆଣିଛନ୍ତି, ଥାନା ଅଫିସର ତାକୁ ତତ୍କ୍ଷଣାତ୍ ଜିପ୍‌ରେ ବସାଇ ହୋଟେଲରେ ଖୁଆଇ ସିଗାରେଟ୍ ଦେଇ ନେଇଗଲେ । ନିତୁ ସାହିର ଅତ୍ୟନ୍ତ ଆଦୃତ ପିଲା, ସାହି ଭିତରେ କୌଣସି ଗଣ୍ଡଗୋଳ କରିନଥିଲା । ସେଥିପାଇଁ ଭାବିଥିଲା, ପୋଲିସ୍ କବଳରୁ ସେ ବାହାରି ଆସି ପାରିବ ।

- ପାରିଲା ନାହିଁ ?

- ନା' ତା'କୁ ସାହିକୁ ଆଣି ଥାନା ଆଗରେ ପିଟିପିଟି ମାରିଥିଲେ । ସାହିର ଝିଅମାନେ ସେଦିନ ପ୍ରତିବାଦ କରିଥିଲେ । ସେମାନଙ୍କ ଉପରେ ଲୁହବୁହା ଗ୍ୟାସ ପ୍ରୟୋଗ କରାଯାଇଥିଲା ।

- ଖବର କାଗଜରେ ବାହାରିନି ?

- ନା' ।

- ତା'ପରେ ?

- ନିତୁ ନାହିଁ । ଅନିନ୍ଦ୍ୟର ସମସ୍ତ ଉଦ୍ଦେଶ୍ୟ ସେ ଜାଣିଥିଲା କି ନାହିଁ ସେ କଥା

କୌଣସି ଦିନ ଆଉ ଜଣା ପଡ଼ିବ ନାହିଁ । ତେବେ ମୋର ମନେ ହୁଏ....

- କ'ଣ ?

- ଜାଣିବା ଉଚିତ୍ ଥିଲା ।

- କାହାର ? ନିତୁର ?

ଯାହାକୁ ଚିହ୍ନନ୍ତି ନାହିଁ, ତା'ର ନାଁଟା ଏତେ ସହଜରେ ସୁଜାତାଙ୍କ ମୁହଁରୁ ବାହାରି ଗଲା ବ୍ରତୀ କ'ଣ ତାଙ୍କୁ ଏମାନଙ୍କ ସହିତ, ଚିହ୍ନା ଅଚିହ୍ନା ସମସ୍ତଙ୍କ ସହିତ ପରିଚିତ କରାଇ ଦେଇଯାଇଛି ?

- ହଁ ! ତାର, ମୋର ତଥା ବ୍ରତୀର ।

- କ'ଣ ଜାଣିବା ଉଚିତ୍ ଥିଲା ?

- ଆମେମାନେ ଯାହା କରୁଥିଲୁ, ଆମ୍ଭମାନଙ୍କ କାର୍ଯ୍ୟ ସହିତ ଅନ୍ୟ ଏକ କାର୍ଯ୍ୟକ୍ରମ ଯେ ଅନ୍ୟମାନେ କରୁଥିଲେ ଏହି କଥା ।

- କି କାର୍ଯ୍ୟକ୍ରମ ?

- କାହିଁକି । ବିଶ୍ୱାସ ଘାତକତା (betrayal) ?

ନନ୍ଦିନୀ ଶାନ୍ତ, ନିରୁତ୍ସାହ । ସେ ଉଦାସୀନ ସ୍ୱରରେ କହିଲା । ଏବେ ସୁଜାତା ଅନିନ୍ଦ୍ୟ ନାଁ ଉଚ୍ଚାରଣ କରିବା ସମୟରେ ତା ଆଖିରେ ବିସ୍ମୟର ଛାଇ କ୍ଷଣିକ ମେଘପରି କାହିଁକି ଭାସିଯାଇଥିଲା, ସେକଥା ବୁଝିପାରିଲେ । ସେ ବିସ୍ମୟ ଅନିନ୍ଦ୍ୟର ବିଶ୍ୱାସଘାତକତା ପାଇଁ ନୁହେଁ । ବିସ୍ମୟ ତା'ର, ବ୍ରତୀ ଓ ଅନ୍ୟମାନଙ୍କ ପାଇଁ । ସମସ୍ତ ପ୍ରକାର ସ୍ଥାୟୀ ବ୍ୟବସ୍ଥାର ପ୍ରଚଣ୍ଡ ବିଶ୍ୱାସହୀନତାକୁ ଏମାନେ ଜ୍ୱଳନ୍ତ ବିଶ୍ୱାସ ଭାବରେ ଗ୍ରହଣ କରିଥିଲେ । ତା' ସଙ୍ଗେ ସଙ୍ଗେ କେହି କେହି ଯେ ସୁପରିକଳ୍ପିତ ଢ଼ଙ୍ଗରେ ବନ୍ଧୁ ଭାବରେ ଖବର ପ୍ରକାଶିତ କରି ବିଶ୍ୱାସ ଘାତକତା କରିପାରନ୍ତି । ସେକଥା ଏମାନେ କିପରି ଭାବିପାରି ନଥିଲେ, ସେଥି ପାଇଁ ଏ ବିସ୍ମୟ !

ସମସ୍ତ କିଛି ଏବେ ମନେ ହୁଏ- ଧୋକାବାଜି ।

ନନ୍ଦିନୀ ପୁଣି କହିଲା । ତା'ର ଶୀର୍ଣ୍ଣ, ଶ୍ୟାମଳ ଓ କ୍ଳାନ୍ତ ମୁହଁର ଆଖିତଳେ ଏକ ସ୍ଥିର ଛାଇ ସୁଜାତାଙ୍କ ନଜର ଏଡ଼ାଇ ନଥିଲା । ପାହାଡ଼ର ଗଡାଣିଆ ଅଞ୍ଚଳର ପାଦ ଦେଶରେ ଏହି ପରି ଛାଇ ସ୍ଥିର ହୋଇ ପଡିଥାଏ । ପାହାଡର ପାଦଦେଶରେ କୌଣସି ଅଜଣା ସ୍ଥାନ ଯେମିତି ଏକ ଚିରନ୍ତନ ଛାୟା ଦେଶ ।

ନନ୍ଦିନୀକୁ କେବେହେଲେ ଚିହ୍ନି ହେବନି, ଜାଣି ହେବନି । ସହସା ମନେ ହେଲା କେତେ କ୍ଷତି ହୋଇଯାଇଛି । କେବଳ ରହିଛି ଶୂନ୍ୟତାର ଅନୁଭୂତି । ବ୍ରତୀ ଯାହାକୁ ଭଲ

ପାଉଥିଲା ତା'କୁ କୌଣସି ଦିନ ଆଉ ଜାଣି ପାରିବେ ନାହିଁ, ଚିହ୍ନି ପାରିବେ ନାହିଁ, ତା'ର ମନ ତାଙ୍କ ପାଖରେ ସବୁଦିନ ପାଇଁ ଅଜଣା ରହିଯିବ; ଏକଥା ସୁଜାତାଙ୍କୁ ଖୁବ୍ କଷ୍ଟ ଦେଲା । ଯନ୍ତ୍ରଣା, ସମୁର ମା' ପାଖକୁ ଆଉ ଯାଇପାରିବେ ନାହିଁ । ନନ୍ଦିନୀକୁ କୌଣସି ଦିନ ଭଲକରି ଚିହ୍ନିବାର ସୁଯୋଗ ପାଇବେ ନାହିଁ ,ଖୁବ୍ କଷ୍ଟ- ବହୁତ କିଛି କ୍ଷତିର ଶୋକ । ନନ୍ଦିନୀର କୌଣସି ବିଶ୍ୱାସ ଓ ଅଭିଜ୍ଞତାରେ ସୁଜାତା ଅଂଶ ଗ୍ରହଣ କରିନାହାଁନ୍ତି । ନନ୍ଦିନୀ କିମ୍ବା ବ୍ରତୀ ପ୍ରଭୃତିଙ୍କୁ ବୁଝିବା କିମ୍ବା ଜାଣିବା ପାଇଁ ଚେଷ୍ଟା କରି ନାହାନ୍ତି । ଯେଉଁସବୁ ବିଷୟ ନେଇ ବ୍ୟସ୍ତ ରହିଥିଲେ, ତହିଁରୁ କେତେ ନିରର୍ଥକ କେତେ ବା ସାର୍ଥକ; ଏକଥା କିଏ ତାଙ୍କୁ କହିବ ? ସୁଜାତାଙ୍କ ନିଜର ସ୍ୱଭାବ ତଥା ମନର କଥାଗୁଡ଼ିକ ଏପରି ଭାବେ ବୁଝି ପାରିବେ ବୋଲି କ'ଣ ସେଦିନ ବ୍ରତୀ ନୀଳ ସାର୍ଟ ପିନ୍ଧି ବାହାରି ଯାଇଥିଲା ? ଶେଷ ପାହାଚରେ ଠିଆ ହୋଇ ଏକ ଲୟରେ ଅନାଇଥିଲା ?

ଯଦି ସେହି ମୁହୂର୍ତ୍ତଟିକୁ ସୁଜାତା ଫେରି ପାଆନ୍ତେ ତେବେ ଅବିଳମ୍ବେ ପାହାଚ ପାହାଚ ତଳକୁ ଓହ୍ଲାଇ ଯାଆନ୍ତେ ସେ । ବ୍ରତୀକୁ କୁଣ୍ଢାଇଧରି ଥାଆନ୍ତେ, ଧରି ରଖିଥା'ନ୍ତେ ତାଙ୍କ ଆତ୍ମଜକୁ । କହିଥା'ନ୍ତେ ମୁଁ ସବୁକଥା ଜାଣିବି ବ୍ରତୀ, ମୂଳରୁ ସବୁକଥା ବୁଝିବାକୁ ଆରମ୍ଭ କରିବି । କେବଳ ତୁ ବାହାରକୁ ଯାଆନାରେ ବ୍ରତୀ । କଲିକତାରେ କୋଡ଼ିଏ ବର୍ଷ ବୟସର ତରୁଣ ଏ ସାହିରୁ ସେ ସାହି ନିରାପଦରେ ଯାଇପାରେ ନାହିଁ । ତୁ ଯାଆନା ।

ସମୟକୁ ଫେରି ପାଇ ହୁଏ ନାହିଁ, ସମୟ ଚାଲିଯାଏ, ନିର୍ମମ, ଘାତକ, ନିୟତି ସଦୃଶ । ସମୟ ଜାହ୍ନବୀ, ଶୋକ ହେଉଛି କୂଳ । ସମୟସ୍ରୋତ ପଟୁମାଟି ଭଳି ଶୋକକୁ ଢ଼ାଙ୍କି ଦିଏ । ତା'ପରେ ସେହ ପଟୁମାଟି ଭିତରୁ ନୂଆ ନୂଆ ଆଙ୍ଗୁଳିର ଗଜା ବାହାରେ । ଆଙ୍ଗୁଠି ଗୁଡ଼ିକ ଆକାଶକୁ ଉଠିବାକୁ ଚାହାଁନ୍ତି । ଆଶା, ବେଦନା, ସୁଖ ଆନନ୍ଦର ଗଜା ଅଙ୍କୁର ଆଙ୍ଗୁଠି ।

ସମସ୍ତଙ୍କୁ ବିଶ୍ୱାସଘାତକ ମନେ ହୁଏ ।

ସୁଜାତାଙ୍କ ଚିନ୍ତାର ପାଚେରୀ ଆରପଟୁ ନନ୍ଦିନୀ କହିଲାପରି ଲାଗିଲା ।

- ଏଥିରେ ତୁମର କଷ୍ଟ ବେଶୀ ବଢ଼ିବ ।

- ନା, ନା ବରଂ ବିଶ୍ୱାସଘାତକତା କଥା ଯେତେବେଳେ ଜାଣି ନଥିଲି, ମୋ ନିଜ ଉପରେ ସେତେବେଳେ ପ୍ରଚଣ୍ଡ ବିଶ୍ୱାସ ଥିଲା କିନ୍ତୁ ସେ ବିଶ୍ୱାସର କିଛି ଭିତ୍ତିଭୂମି ନଥିଲା । ତେଣୁ ମୁଁ ଯେତେବେଳେ ସନ୍ଦେହ କରିବାକୁ ଆରମ୍ଭ କଲି, ଘଟଣା ସମ୍ବନ୍ଧରେ ବାରମ୍ବାର ଚିନ୍ତା କଲି, ମୁଁ ବେଶ୍ ନିଶ୍ଚିନ୍ତ ହୋଇପାରିଲି । ବର୍ତ୍ତମାନ ମୋ ସ୍ଥିତି କେଉଁଠି ତାହା ମୁଁ ଜାଣେ ।

- ସେଥିରେ ତୁମକୁ କି ଲାଭ ମିଳିବ ?

- ହଁ, ସେତେବେଳେ କେତେ ସହଜରେ ମନେ ହୋଇଥିଲା ସତରେ ଗୋଟିଏ ଯୁଗର ପରିସମାପ୍ତି ଘଟିଛି । ଏବେ ଜାଣିଛି ଯେ ଆମେ ଏକ ନୂତନ ଯୁଗର ଅଯମାରମ୍ଭ କରିବାକୁ ଯାଉଛୁ । ମୁଁ ଏବଂ ବ୍ରତୀ ଖାଲି ଗପ କରିକରି କେତେଦିନ ଶ୍ୟାମ ବଜାରରୁ ଭବାନୀପୁର ଚାଲିଚାଲି ଯାଇଛୁ । ସେତେବେଳେ ଯାହା ଦେଖିଥିଲୁ-ମଣିଷ, ଘର, ରାସ୍ତାର ନିୟମ, ଫୁଟ୍‌ପାଥ୍‌ର ଫେରିବାଲା ବିକ୍ରୀ କରୁଥିବା ଲାଲ ଗୋଲାପ, ରାସ୍ତା କଡ ତୋରଣର ଫୁଲ ବା ବସ୍ ରହୁଥିବା ସ୍ଥାନମାନଙ୍କରେ ମରା ହୋଇଥିବା ଖବର କାଗଜ, ମଣିଷ ମୁହଁର ହସ ରାସ୍ତା କଡ ଦୋକାନରେ ଟଙ୍ଗା ହୋଇଥିବା କୌଣସି ଛୋଟ ପତ୍ରିକାରେ ବାହାରିଥିବା କବିତାର ପ୍ରତିବିମ୍ବ । ଯେତେବେଳେ ପଡ଼ିଆରେ ହେଉଥିବା ସଭାରେ ଜନତାର କରତାଳି କିମ୍ବା କୌଣସି ହିନ୍ଦୀ ଗୀତର ମନମୁଗ୍‌ଧକର ସ୍ୱର ଶୁଣୁଥିଲୁ ସେତେବେଳେ ଆମର ଆନନ୍ଦ କେତେ ତୀବ୍ର ଥିଲା-ଆନନ୍ଦକୁ ଯେପରି ଧରି ରଖି ପାରୁ ନଥିଲୁ । ସେଥିରେ ଫାଟି ପଡୁଥିଲୁ । ପ୍ରତ୍ୟେକ ସାନବଡ଼ ସମସ୍ତ ଘଟଣା ପ୍ରତି ଆମେ ବିଶ୍ୱସ୍ତ ଥିଲୁ -ସେ ମନ କ'ଣ ଆଉ ଫେରି ଆସିବ ? ନା, ଆଉ ମୁଁ ଫେରି ପାଇବି ନାହିଁ । କେବେ ବି ନୁହେଁ । ସମ୍ପୂର୍ଣ୍ଣ କ୍ଷତି । ଗୋଟାଏ ଯୁଗ ସତରେ ଶେଷ ହୋଇଗଲା । ସେ ଦିନରୁ ମୁଁ ମରିଯାଇଛି ।

- କାହିଁକି ନନ୍ଦିନୀ ? ବ୍ରତୀ ନାହିଁ ବୋଲି ।

- ହଁ ,ବ୍ରତୀ ନାହିଁ ବୋଲି । ଆହୁରି ଅନେକ କିଛି ନାହିଁ । ନିର୍ଜନ କୋଠରୀରେ ରହି ଭାବି ଭାବି ମୁଁ ମଧ୍ୟ ନିଃଶେଷ ହୋଇଯାଇଛି ।

- ସେମିତି କହନା !

- ମୋ ମା' ମଧ୍ୟ ଆପଣଙ୍କ ପରି କହେ । ମା' ବୁଝେନା, ଆପଣ ମଧ୍ୟ ବୁଝିପାରିବେ ନାହିଁ ।

- କିଛି କ'ଣ ବୁଝିବି ନାହିଁ ନନ୍ଦିନୀ ?

- କେମିତି ବୁଝିବେ ? ଆପଣମାନେ କ'ଣ ଆମ ପରି ବିଶ୍ୱସ୍ତତା ପ୍ରତି ଅଙ୍ଗୀକାରବଦ୍ଧ , ଦୈନନ୍ଦିନ ଜୀବନର ସମସ୍ତ ଘଟଣା ପ୍ରତି ?

ନା, ସୁଜାତା ତା' କରି ନାହାଁନ୍ତି । ପଥଚାରୀର ହସରେ ଭାସି ଆସୁଥିବା ଗୀତର ଲହରୀରେ କିମ୍ବା ରକ୍ତ ଗୋଲାପରେ ଉଜ୍ଜ୍ୱଳ ଆଲୋକ ଅଥବା ଝୁଲୁଥିବା ତୋରଣର କନାରେ... ନିଜ ଆନୁଗତ୍ୟ ଗଚ୍ଛିତ ରଖି ନାହାଁନ୍ତି । ସୁଜାତା ନିଜର୍ ଆନୁଗତ୍ୟ କେଉଁଠି କେଉଁ କେଉଁ ବିଷୟରେ ବା ଗଚ୍ଛିତ ରଖିଥିଲେ ?

- ଧୋକାବାଜି କିପରି ଚାଲିଥିଲା ଏବେ ଜାଣୁଛି । ଏବେ ବି ଚାଲିଛି ।

- ଏବେ ମଧ୍ୟ ନନ୍ଦିନୀ ?

- ଏବେ ମଧ । ନହେଲେ ଜେଲ୍ ମାନଙ୍କର ପାଚେରୀ ଉଚ୍ଚାରୁ ଆହୁରି ଅଧିକ ଉଚ୍ଚା କାହିଁକି ହେଉଛି ? କାହିଁକି 'ଓ୍ବାଚଟାଓ୍ବାର'? ହଜାର ହଜାର ପିଲା ଜେଲ୍‌ରେ ସଢୁଥିବା ବେଳେ କେହି ପାଟି ଫିଟାଉ ନାହାଁନ୍ତି କାହିଁକି ? ପ୍ରଥମେ ଦଳର ସ୍ୱାର୍ଥ ରକ୍ଷାକରି ମୁହଁ ଖୋଲୁଛନ୍ତି । କାହିଁକି ? ଆମେ ଯେଉଁମାନେ କାମ କରିବାକୁ ଚାହୁଁଛୁ, ଗୋଟାଏ ଖବର କାଗଜ ଛାପି ପାରୁନୁ,ପ୍ରେସ୍, ଟାଇପ୍ କିଛି ପାଉନୁ ଅଥଚ ଅଜସ୍ର ପତ୍ର ପତ୍ରିକା ଛପା ହେଉଛି, ପ୍ରକାଶ ପାଉଛି । ଶୁଣାଯାଏ, ସେମାନେ ଏହି କାରଣ ପ୍ରତି ସମ୍ବେଦନଶୀଳ ? ବିଶ୍ୱାସଘାତକ । କେତେ ଜଣ ଭିନ୍ନ କଥା କହି ବିଶ୍ୱାସଘାତକତା ନ କରିଛନ୍ତି ? କେତେ କବି ସେ ସମୟରେ ବାଂଲାଦେଶ ବାଲାଂଦେଶ କହି ମାତିଥିଲେ ଆଉ ଏବେ ଆଖିଲୁହରେ କବିତା ଲେଖୁଛନ୍ତି ? ବିଶ୍ୱାସଘାତକତା, ଏବେ କ'ଣ ପାଇଁ ଘେରାଉ, ଜେଲ୍‌ଖାନାରେ ଗୁଳି, ଧରପଗଡ଼ । ସବୁ ବିଶ୍ୱାସ ଘାତକତା ।

ଏବେ ମଧ ?

ହଁ,ଏବେ ମଧ । କୌଣସି ଖବର କାଗଜରେ ବାହାରେ ନାହିଁ, ବୋଲି କ'ଣ ଧରପଗଡ଼ ବନ୍ଦ ହୋଇଯାଇଛି । ଗୁଳି ଚାଲୁନି । କ'ଣ ନ ହେଉଛି ? କାହିଁକି ହେବନି । କୋଉ କଥାର ପରିସମାପ୍ତି ଘଟିଛି ? କାହାରି ନୁହେଁ ,କିଛି ଶେଷ ହୋଇନି । ଷୋହଳରୁ ଚବିଶ ବର୍ଷ ବୟସରେ ଗୋଟାଏ ପୀଢ଼ି ଲୋପ ପାଇଗଲା । ଯାଉଛି ମଧ...

ସୁଜାତା ଯାହା କେବେ କରି ନାହାନ୍ତି, ତାହାହିଁ କଲେ । ଆବେଗର ବଶୀଭୂତ ହୋଇ କାମ କରିବା ତାଙ୍କ ପ୍ରକୃତି ନୁହେଁ । ଜୀବନରେ ଯାହା ସ୍ୱାଭାବିକ ଇଚ୍ଛା, ଯେଉଁଥିରେ ଆଗ୍ରହ ତା' କରିବା ପାଇଁ ସେ ସାହାସ କରି ନାହାଁନ୍ତି । ଅଳ୍ପ ବୟସ ସମୟରେ ବର୍ଷା ଝଡ଼ ଦେଖିବାକୁ ଝରକା ପାଖରେ ଠିଆ ହେଲେ ମଧ ଦିବ୍ୟନାଥ ତାଙ୍କୁ ଶାସନ କରିଛନ୍ତି । ଅଳ୍ପ ବୟସର ସ୍ୱଭାବରେ, ମନରେ ଯେଉଁ ଅନୁଶାସନ ପୁରାଇ ଦିଆଯାଇଥାଏ ସେଗୁଡିକ ଅଲଂଘ୍ୟ । କିନ୍ତୁ ସୁଜାତା ନନ୍ଦିନୀ ହାତରେ ତାଙ୍କ ହାତ ରଖିଲେ । ଏହି ସମୟ, ଏହି ସୁଯୋଗ ଆଉ ତାଙ୍କୁ ମିଳିବ ନାହିଁ ବୋଲି କ'ଣ ସୁଜାତା ଏହି ମୁହୂର୍ତ୍ତରେ ଜାଣୁ ନାହାଁନ୍ତି ? ସମୟ ପରି ପଳାତକ ଆଉ କିଏ ଅଛି ? ବ୍ରତୀ ନୀଳସାର୍ଟ ପିନ୍ଧି ତଳ ପାହାଚରେ ଠିଆ ହୋଇ ତାଙ୍କ ଆଡକୁ ଚାହିଁ ରହିବାର ଅମୂଲ୍ୟ ଦୁର୍ଲଭ ମୁହୂର୍ତ୍ତ ଆଉ ଫେରି ପାଇବେ ନାହିଁ । ବର୍ତ୍ତମାନ ମନ ଗହନରେ ଗଭୀର ଅତଳରେ କି ଶୂନ୍ୟତା, କେଉଁଥିପାଇଁ କେଜାଣି ସାନ୍ତ୍ୱନାତୀତ ଶୋକ; ନନ୍ଦିନୀକୁ ବୋଧହୁଏ ଆଉ ପାଖରେ ପାଇପାରିବେ ନାହିଁ ।

ସେଥିପାଇଁ କ'ଣ ସୁଜାତା ନନ୍ଦିନୀ ହାତରେ ହାତ ରଖିଥିଲେ ? ନନ୍ଦିନୀ କ'ଣ ତାଙ୍କ ହାତରୁ ତା' ହାତ ଉଠାଇ ନେଇ ତାଙ୍କୁ ପୁଣି ତାଙ୍କର ଜୀବନର ଅଭ୍ୟସ୍ତ ଗଣ୍ଡି ଭିତରକୁ ଠେଲିଦେବ ? ସମୁର ବଡ଼ ଭଉଣୀ ଆଖିରେ ଯେଉଁ ପ୍ରତ୍ୟାଖ୍ୟାନ ସୁଜାତା ଦେଖିଛନ୍ତି,

ନନ୍ଦିନୀ ଆଖିରେ କ'ଣ ସେହି ଭଳି ପ୍ରତ୍ୟାଖ୍ୟାନ ଦେଖିବାକୁ ପାଇବେ ? ଭାବିଲେ ଭୟ ଲାଗୁଛି । ସୁଜାତା ଜାଣନ୍ତି ବର୍ତ୍ତମାନ ଠାରୁ ଦିବ୍ୟନାଥ, ଜ୍ୟୋତି, ତୁଲୀ, ନିପା, ବିନି ଓ ବ୍ୟାଙ୍କର ସହକର୍ମୀଗଣଙ୍କ ସହିତ ବାହାରିଆ ସଂପର୍କ, କିନ୍ତୁ ଅନ୍ତରରେ କେବଳ ବ୍ରତୀ, କେବଳ ବ୍ରତୀ ନୁହଁ, ବ୍ରତୀ, ସମୁଗ ମା, ନନ୍ଦିନୀ, ପ୍ରତ୍ୟେକଙ୍କ ସହିତ ବିଚ୍ଛେଦର ଶୋକ ନେଇ ଗୁମୁରି ଗୁମୁରି ରହିବା, ସେଇଟା ହିଁ ତାଙ୍କର ହେବ ନିଭୃତ କୋଠରୀ । ଏବେଠାରୁ ସେ ହୋଇଯିବେ ଏକବାରେ ଏକା, ସଂପୂର୍ଣ୍ଣ ଭାବେ ଏକା । କେହି ଦୁଆର ଖୋଲି ତାଙ୍କ ଏକାକୀତ୍ୱକୁ ଘୁଞ୍ଚାଇ ପାରିବେ ନାହିଁ । ଆପଣ ବ୍ରତୀ ଚାଟାର୍ଜୀର ମା' ?

କିନ୍ତୁ ନନ୍ଦିନୀ ହାତ ଉଠାଇ ନେଲା ନାହିଁ ।

ନନ୍ଦିନୀ କିଛି ସମୟ ଚୁପ୍ ରହି ତା'ପରେ ଭୀରୁ ,କୁଣ୍ଠିତ ଅନିଚ୍ଛୁକ ହାତରେ ତାଙ୍କ ହାତରେ ତା'ର ଆଙ୍ଗୁଳି ବୁଲାଇଲା । ସୁଜାତା ହାତ ତଳକୁ କଲେ । ସେ କୃତଜ୍ଞ, ନନ୍ଦିନୀ ତାଙ୍କ ହାତରେ ହାତ ରଖିଛି ।

- ମୁଁ ବ୍ରତୀକୁ ଭଲ ପାଉଥିଲି ।

- ବ୍ରତୀ ତୁମ କଥା ମୋତେ କହିଥିଲା ।

- କହିଥିଲା ?

- ହଁ, ଜାନୁୟାରୀ ଷୋହଳ ତାରିଖ ଦିନ ।

- ଆଶ୍ଚର୍ଯ୍ୟ ।

- କ'ଣ ?

- ଆଗରୁ କହିନ ?

- ନା' ।

- ବ୍ରତୀ କହିଲେ କେବଳ ଆପଣଙ୍କୁ ହିଁ କହିବ -ଏକଥା ମୋର ମନେ ହୋଇଥିଲା । ଆପଣଙ୍କ ଘରେ ଆଉ କାହା ଉପରେ ତା'ର ବିଶ୍ୱାସ ନଥିଲା ।

- ବ୍ରତୀର ?

- ଆପଣ ଏଥିପାଇଁ ଆଶ୍ଚର୍ଯ୍ୟ ହେଉଛନ୍ତି କାହିଁକି ?

- ବ୍ରତୀ ଅନ୍ୟମାନଙ୍କ ସହିତ ଏତେ ଘନିଷ୍ଠ ନଥିଲା । କିନ୍ତୁ...

ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ବାପା, ଭାଇ, ଭଉଣୀ ହେଲେ କ'ଣ ତାଙ୍କୁ ଭଲ ପାଇବାକୁ ହେବ ? ସେମାନଙ୍କର ତରଫରୁ ସେପରି କୌଣସି ମନୋଭାବର ସୂଚନା ନଥାଇ ?

ମୁଁ ଜାଣିନି ନନ୍ଦିନୀ-ବ୍ରତୀକୁ ଯେ, ମୁଁ କେତେ କମ୍ ଜାଣି ପାରିଥିଲି ସେ କଥା ଏବେ ବୁଝିଛି । ସେତେବେଳେ ବୁଝିନି ।

ବୁଝିବାକୁ ଚେଷ୍ଟା କରିଥିଲେ କି ?

ସୁଜାତା ମୁଣ୍ଡ ହଲାଇଲେ । କୌଣସି ଅବସ୍ଥାରେ ସେ ମିଛ କଥା କହିପାରନ୍ତି ନାହିଁ ।

ବ୍ରତୀ ସେକଥା ଜାଣିଥିଲା ।

ଆପଣମାନେ, ଆପଣ ମାନଙ୍କର ପୀଢ଼ି ହିଁ ଏହି ପ୍ରକାର । ଆପଣଙ୍କ ପାଇଁ ସବୁ ଦରକାର । ଭଲ ପାଇବା, ବିଶ୍ୱସ୍ତ ରହିବା, ବାଧ ହେବା କାହିଁକି ଆଶା କରନ୍ତି ? କିପରି ବା ଆଶା କରନ୍ତି ?

- ଆଶା କରିବୁ ନାହିଁ ନନ୍ଦିନୀ ?

- ନା' ଆଶା କରିବେ ନାହିଁ । ଆଶା କରିବାର ଅଧିକାର ଆପଣମାନଙ୍କର ମଧ୍ୟରୁ କେତେଜଣ ପରିତ୍ୟାଗ କରିଛନ୍ତି ! ପୁଣି କେତେକଙ୍କର ବାପା ମା'ଙ୍କ ସହିତ ସହଜ ସଂପର୍କ ଥିଲା । ଅନ୍ତୁ ଦୀପୁ, ସଞ୍ଚୟନ-ଏ ସମସ୍ତଙ୍କ ଜୀବନ ସୁଖମୟ ଥିଲା । ଅଥଚ ସେମାନେ ଆମ ସହିତ ଆସିଥିଲେ କାହିଁକି ? କିପରି ଆସିଥିଲେ ? ସେକଥା କହିବ ବା କିଏ ?

- ତୁମେ କୁହ ନନ୍ଦିନୀ ।.....

- ବ୍ରତୀର କଥା ଧରାଯାଉ । ତା' ବାପାଙ୍କ ସହିତ ତା'ର କୌଣସି ପରିଚୟ ନଥିଲା । ପ୍ରଥମେ ଯେତେବେଳେ ବାପାଙ୍କ ନିକଟରୁ ସ୍ନେହ ଶ୍ରଦ୍ଧା ପାଇ ପାରିଥାନ୍ତା, ସେତେବେଳ ବାପା କୌଣସି ସମ୍ପର୍କ ଗଢ଼ିବାକୁ ଚେଷ୍ଟା କରିନାହାନ୍ତି । ବ୍ରତୀ କହୁଥିଲା ସେ ଆପଣଙ୍କୁ ପା-ପୋଛ ପରି ବ୍ୟବହାର କରୁଥିଲେ ।

- ବ୍ରତୀ ଏକଥା କହୁଥିଲା ?

- ମୁଁ ତେବେ ଜାଣିଲି କିପରି କୁହନ୍ତୁ ?

ବ୍ରତୀ କହିଥିଲା !

ସୁଜାତାଙ୍କ ମୁହଁ ଲାଲ ହୋଇଗଲା, ତା'ପରେ ସ୍ୱଭାବିକ ରଙ୍ଗ ଫେରି ଆସିଲା । ବ୍ରତୀ ତେବେ ସବୁ ଜାଣିଥିଲା । ସେଥି ପାଇଁ ମା ପ୍ରତି ତା'ର ଥିଲା ଅତୁଟ ସ୍ନେହ, ଭଲ ପାଇବା । ଖୁବ୍ ସାନ ଥିଲା ବେଳେ ସୁଜାତା ନିରୋଳାରେ କାନ୍ଦୁ ଥିବାର ଦେଖି ଛ'ବର୍ଷ ବୟସରେ ବ୍ରତୀ କହିଥିଲା, ରୁହ, ମା ମୁଁ ତୁମ ପାଇଁ ଗୋଟେ ବାଘ ଆଉ ଶିକାରୀଥିବା ଛାପା ଶାଢ଼ୀ କିଣିଦେବି ।

ସେ କହୁଥିଲା, ବାପା ଲାଞ୍ଚ ଦେଇ ଅନ୍ୟମାନଙ୍କ ମହକିଲ ନିଜର କରି ନେଉଛନ୍ତି । ସେ ଜଣେ 'ଚାଟାର୍ଡ ଆକାଉଣ୍ଟାଣ୍ଟ' ଯାହାର ମୃତ୍ୟୁରେ କେହି ଦୁଃଖ କରିବେ ନାହିଁ ।

କହୁଥିଲା ଆପଣଙ୍କ ପରି ସ୍ତ୍ରୀ, ଚାରି ଚାରି ଜଣ ପୁଅ ଝିଅ ଥିବା ସତ୍ତ୍ୱେ ସେ ପର ସ୍ତ୍ରୀ ନେଇ ନିୟମିତ... ଜଣେ ଟାଇପିଷ୍ଟ ଝିଅକୁ ସେ ଘର ଭଡାକରି ରଖିଥିଲେ । ବ୍ରତୀ ସେଥି ପାଇଁ ତାଙ୍କୁ ଧମକାଇବା କଥା ଆପଣ ଜାଣନ୍ତି ?

- କେବେ ?

- ନଭେମ୍ବର ମାସରେ । ବ୍ରତୀ ମରିବାର ଦୁଇମାସ ପୂର୍ବରୁ ।

ଏବେ ସୁଜାତା ବୁଝିପାରିଲେ, କାହିଁକି ଗତ କେତେ ମାସ ହେବ ବ୍ରତୀ ଦିବ୍ୟନାଥଙ୍କ ଆଗକୁ ଆସିନି କିମ୍ବା କଥା କହିନି । କାହିଁକି ଦିବ୍ୟନାଥ ବ୍ରତୀର ନାଁ ଉଚ୍ଚାରଣ କରିନାହାଁନ୍ତି । ଥରେ ମଧ୍ୟ ପୂର୍ବପରି କହି ନାହାଁନ୍ତି ତୁମ ସାନ ପୁଅ କ'ଣ ଘରେ ରହୁଛି ?

ତା'ର ବଡ଼ଭାଇ ବଡ଼ ଭଉଣୀ ବାପାଙ୍କୁ ପ୍ରଶଂସା କରନ୍ତି । ବ୍ରତୀ କୁହେ ସେମାନେ ମଣିଷ ନୁହଁନ୍ତି । ତା' ବଡ ଭଉଣୀ ଗୋଟାଏ ଦିବ୍ୟାଙ୍ଗନା । ସାନନାନୀ ଖୁବ୍ କୁଟିଳ ଓ ଅସଭ୍ୟ । ବଡ଼ ଭାଇ ଗୋଟାଏ ଦଲାଲ । ତା'ରି ପାଖରୁ ଏସବୁ ମୁଁ ଶୁଣିଛି । କେବଳ ଆପଣଙ୍କୁ... ଆପଣଙ୍କୁ ସେ ଭଲ ପାଉଥିଲା । ସେଥିପାଇଁ ସେ ଘରଛାଡ଼ି ଚାଲି ଯାଇ ନଥିଲା ।

- କେଉଁଠିକି ଯାଇଥା'ନ୍ତା ?

- ତା'ର ତ ଘରେ ରହିବା କଥା ନୁହେଁ । ଆପଣଙ୍କ ପାଇଁ ସେ ଯାଉ ନଥିଲା । କିନ୍ତୁ ଜାନୁୟାରୀ ଉଣେଇଶି ତାରିଖରେ ସେ ଓ ମୁଁ ଅନ୍ୟମାନଙ୍କ ସହିତ ଚାଲି ଯାଇଥାଆନ୍ତୁ ।

- କୁଆଡେ ?

- ମୂଳ ଘାଟୀ ( base ) କୁ ।

- ବ୍ରତୀ ଘର ଛାଡ଼ି ଚାଲି ଯାଇଥା'ନ୍ତା ?

- ବଞ୍ଚିଥିଲେ ଯାଇଥା'ନ୍ତା । ଅନିନ୍ଦ୍ୟ ଯଦି ଧୋକା ଦେଇ ନଥାନ୍ତା ! ବ୍ରତୀ ପ୍ରଭୃତିଙ୍କ ଅବିଶ୍ୱାସ ନିଜ ଘରୁ ଆରମ୍ଭ ହୁଏ । ସମୁ କହୁଥିଲା ତା' ବାପାଙ୍କୁ ସେ ଆଗ ମାରିବ । ରାଗିଗଲେ କହୁଥିଲା, ବାପା ସବୁ କଥା ଖୁବ୍ ସହଜରେ ଗ୍ରହଣ କରନ୍ତି । ମାଛ ବିକାଳୀଠାରୁ ଆରମ୍ଭ କରି ସାହିର ଦାଦା ସମସ୍ତେ ତାଙ୍କ ଜିନିଷ କିଣି ଦାମ ଦେଉ ନଥିଲେ । ପୁଣି ଅନ୍ତୁ, ଦୀପୁ, ସଞ୍ଚୟନ ଏମାନେ ତାଙ୍କ ବାପାଙ୍କୁ ଶ୍ରଦ୍ଧା କରୁଥିଲେ । ଏସବୁ ବ୍ୟାଖ୍ୟା କରିବା ସତରେ କଷ୍ଟକର । ଏମିତି ସବୁ ହିସାବ ବହିର୍ଭୂତ ବିଷୟ ।

- ବ୍ରତୀ ମୋ କଥା ଆଉ କ'ଣ କହୁଥିଲା ?

- ଅନେକ ଅନେକ କଥା କହୁଥିଲା । ସବୁବେଳେ ନୁହେଁ ,ମଝିରେ ମଝିରେ । ହେଇଟି ଦେଖନ୍ତୁ ବ୍ରତୀର ଘାଟୀକୁ ଯିବାକଥା ଜାନୁଆରୀ ପନ୍ଦର ତାରିଖରେ । ସେ ଟାଣି ଟାଣି ଉଣେଇଶି ପର୍ଯ୍ୟନ୍ତ ଗଡ଼େଇ ନେଇଥିଲା । ମୁଁ କେବଳ ତା ଜନ୍ମଦିନ କଥା ଜାଣିଥିଲି,

ତା ଜନ୍ମଦିନଟା ଆପଣଙ୍କ ପାଇଁ ଖୁବ୍ ମୂଲ୍ୟବାନ୍ ଥିଲା । ତା'ର ଅବଶ୍ୟ ଏସବୁରେ ବିଶ୍ୱାସ ନଥିଲା । କେବଳ ଆପଣଙ୍କ ପାଇଁ ଅଟକି ଥିଲା.... ମୁଁ ଜାଣିଥିଲି,କାହାକୁ କହିନଥିଲି । ତେବେ ତାକୁ ଖୁବ୍ ଗାଳି ଦେଇଥିଲି ।

ସେ କ'ଣ କହିଲା ?

ଖାଲି ହସିଥିଲା । ଯେଉଁ କଥାର ଉତ୍ତର ଦେବାକୁ ବ୍ରତୀ ଚାହୁଁନଥିଲା,ସେ କେବଳ ହସିଦେଉଥିଲା । କହିଥିଲା,ମୁଁ ବୋଧହୁଏ ତୋ ପରି ଦୃଢ଼ ନୁହେଁ ।

ବ୍ରତୀ ଆଉ କ'ଣ କହୁଥିଲା ?

କହୁଥିଲା ଆପଣ ଖୁବ୍ ଭଲ । କହୁଥିଲା ଆପଣ ଭାରି ଅବୁଝା । କିନ୍ତୁ ଆପଣଙ୍କୁ ସେ ବୁଝେଇ ପାରେ । ଆପଣଙ୍କ ଉପରେ ତା'ର ରାଗ ନଥିଲା । ସେ ଜାତୀୟ ବୃତ୍ତି ପାଇବା ପରେ ପ୍ରଥମେ ଚାକିରି କଥା ଭାବୁଥିଲା । ସେତେବେଳେ ସେ କହୁଥିଲା ଆପଣଙ୍କୁ ନେଇ କୁଆଡ଼େ ଚାଲିଯିବ । ପରେ ଅବଶ୍ୟ ସେ ସବୁକଥା ଆଉ କହିନି ।

ତା'ହେଲେ ସୁଜାତାଙ୍କର ଅତ୍ୟନ୍ତ ଜାବୁଡ଼ିଧରି ଭଲପାଇବା ପରୋକ୍ଷରେ ବ୍ରତୀର ମୃତ୍ୟୁ ପାଇଁ ଦାୟୀ ? ତାଙ୍କ ମନରେ ଦୁଃଖ ହେବ ବୋଲି ବ୍ରତୀ ସେଦିନ କଲିକତାରେ ରହିଥିଲା । ନଚେତ୍ ସେ ଘାଟୀକୁ ଚାଲିଯାଇଥାନ୍ତା । ଘାଟୀ କେଉଁଠି ?

ନିଭୃତ କୋଠରୀରେ ରହିଲେ ମଣିଷର ମନ ଅନୁସନ୍ଧାନୀ ଓ ଶାଣିତ ହୋଇଯାଏ,ଶବ ବ୍ୟବଚ୍ଛେଦ କରୁଥିବା ଡ଼ାକ୍ତରଙ୍କ ଛୁରୀ ପରି ।

ନନ୍ଦିନୀ କହିଲା ନିଜକୁ ଦୋଷ ଦେବେନି । ଯେଉଁ ଭାବରେ ହେଲେ ମଧ୍ୟ ବ୍ରତୀ ମରିଥାନ୍ତା । ଘାଟୀ ହେଉକି କଲିକତା ହେଉ । ଅନିନ୍ଦ୍ୟ ବିଶ୍ୱାସଘାତକତା କରିନଥିଲେ ......

ତେବେ ମନେ ହେଉଛି ....

ଅନିନ୍ଦ୍ୟ ବିଶ୍ୱାସଘାତକତା କଲା ସେଇଟାହିଁ ମୂଳକଥା । ଆମେମାନେ ତ କେହି ଦଳତ୍ୟାଗୀ ନଥିଲୁ । ସିଧା ସେ ମତବାଦ ଗ୍ରହଣ କରିଥିଲୁ । ଅନିନ୍ଦ୍ୟ ଅନ୍ୟ ଦଳ ଛାଡ଼ି ଆସିଥିଲା । ଆସିଥିଲା କହିବୋଲି ନିର୍ଦ୍ଦେଶ ଅନୁସାରେ । କଥାଥିଲା ସମ୍ଭୁ ପ୍ରଭୃତି ସେଦିନ ସାହିକୁ ଫେରିବେ । ପରେ ମତ ବଦଳା ଗଲା ।ଆମେ ସବୁବେଳେ ପ୍ରତିଷ୍ଠାନର ଏହିସବୁ ଦୁର୍ବଳତା ପାଇଁ କ୍ଷତିଗ୍ରସ୍ତ ହୋଇଛୁ । ଗୁପ୍ତ ସଂସ୍ଥାମାନଙ୍କରେ ତୁମେ ସର୍ବଦା ଅନ୍ୟ ଉପରେ ନିର୍ଭରଶୀଳ । ସମ୍ଭୁ ପ୍ରଭୃତି ବାହାରିବେ ନାହିଁ ,ଏକଥା ଅନିନ୍ଦ୍ୟ ସେମାନଙ୍କୁ ଜଣାଇବାର କଥା । ତା'ପରେ ସେ ଏକଥା ଯେ ସେମାନଙ୍କୁ ଜଣାଇଛି ସେ କଥା ବ୍ରତୀକୁ କହିବା କଥା ।

ବ୍ରତୀ ସେଥିପାଇଁ ଘରେ ରହି ଅପେକ୍ଷା କରିଥିଲା ।

ହଁ ,ଅନିନ୍ଦ୍ୟ ସମ୍ଭୁ ପ୍ରଭୃତିଙ୍କୁ କିଛି ଖବର ଦେଲାନାହିଁ । ଅନ୍ୟ ସାହିକୁ ଯାଇ ବିରୋଧୀ

ମାନଙ୍କୁ ଖବର ଦେଲା । ଦେବାପରେ ଆଉ ସେ ଫେରିନି । ସିଧା କଲିକତା ଛାଡ଼ି ଅନ୍ୟସ୍ଥାନକୁ ପଳାଇଲା । ସନ୍ଧ୍ୟାରେ ମୋର ଲାଲ୍‌ଟୁକୁ ଦେଖା କରିବା କଥା । ମୁଁ ଯେତେବେଳେ ଜାଣିଲି ସେମାନେ ଚାଲିଗଲେଣି ,ବ୍ରତୀକୁ ସେ କଥା ଜଣାଇଲି । ତା'ପରେ ବ୍ରତୀ ଆଉ ଅଧିକ ନିର୍ଦ୍ଦେଶ ପାଇଁ ଅପେକ୍ଷା କରିନି । ନିଜେ ସେ ସମୁ ପ୍ରଭୃତିଙ୍କୁ ସାବଧାନ କରିବା ପାଇଁ ବାହାରି ଯାଇଛି ।

- ତୁମେ ....ତୁମେ ଜାଣିଲ କିପରି ?

- ମୁଁ ଜାଣିଲି ସକାଳେ । ପାର୍ଥର ଯେଉଁ ଭାଇ ସେ ରାତ୍ରରେ ପଳାଇଥିଲା ତାହାଠାରୁ ମୁଁ ଜାଣିଲି ।

ସେତେବେଳେ ତୁମେ ....

ସେଦିନ ସକାଳେ ମୁଁ ଆରେଷ୍ଟ (arrest) ହେଲି ।

ସେଦିନ ସକାଳେ ?

ହଁ । ଅନିନ୍ଦ୍ୟ ଆମର ପୁରା ୟୁନିଟ୍ କୁ ଧୋକା ଦେଇଦେଲା ।

ସେ ଏବେ କେଉଁଠି ?

କିଏ ଅନିନ୍ଦ୍ୟ ? ଅନିନ୍ଦ୍ୟ ଏବେ ଦୂର ବିଦେଶରେ ।

- ଦୂର ମାନେ ?

- ଅନ୍ୟ ପ୍ରଦେଶରେ ।

- ତା' ପରେ ? ତା'ପରେ ଜେଲରେ ଥିଲି । ସେତେବେଳେ ମନେ ହେଉଥିଲା ....

- କ'ଣ ?

- ଅନିନ୍ଦ୍ୟକୁ ମାରିବି । ଏବେ ଆଉ ସେକଥା ମନେ ହୁଏନା ।

- ଏବେ କ'ଣ ?

- ନା ମାଉସୀ,ମୁଁ ବଦଳିନି । ତେବେ କେବଳ ଅନିନ୍ଦ୍ୟ ନୁହେଁ ,ଅନ୍ୟ ଉପାୟରେ ସମସ୍ତଙ୍କ ବିରୁଦ୍ଧରେ ପୁଣି ଲଢ଼ିବାକୁ ପଡ଼ିବ ।

- ପୁଣି ନନ୍ଦିନୀ ?

- କାହିଁକି ନୁହେଁ ?

- କାହିଁକି କୁହ ? ତେବେ ତୁମକୁ ମଧ .....

ଆପଣ ବୁଝିପାରୁନାହାନ୍ତି । ତୁମେ ଅନ୍ତରରୁ ଭଲପାଅ.... ତା'ପରେ ଜେଲ୍;ଜେରା, ଆଖି ଉପରେ ହଜାରେ ଦିହଜାର ପାୱାରର ଆଲୁଅ ....ସେମାନେ ତମ ମନୋବଳ ଭାଙ୍ଗି

ଦେବାକୁ ଚାହାନ୍ତି - ସେତେବେଳେ ତୁମେ ଏକାକୀ,ନିଃସଙ୍ଗ । ମୁଁ କେବେହେଲେ ଆପଣ ଯାହା ଭାବୁଛନ୍ତି ପୂର୍ବ ପରି ସହଜ ସ୍ୱାଭାବିକ ହୋଇପାରିବି ନାହିଁ । କେବଳ ବ୍ରତୀ ପାଇଁ ନୁହେଁ । ବ୍ରତୀ ବଞ୍ଚିଥିଲେ ହୁଏତ ଆମେ ବାହାହୋଇଥାନ୍ତୁ । କିମ୍ବା ହୋଇନଥାନ୍ତୁ । କ'ଣ କରିଥାନ୍ତୁ ସେଟା ନିର୍ଭର କରୁଥିଲା ଅନ୍ୟ ଅନେକ କଥା ଉପରେ । ଜାଣେନା କଣ ହୋଇଥାନ୍ତା । ତା'ପରେ ସବୁକଥା ଅବଶ୍ୟ ମୁଁ କହୁନି ,ତମର ଅନେକ ବିଷୟରୁ ଅନୁରାଗ ଚାଲିଯାଏ ।

- ବ୍ରତୀକୁ କ'ଣ ସତରେ ତମେ ଭଲ ପାଉଥିଲ ?

- ସେତେବେଳେ ସେହିକଥା ମନେ ହେଉଥିଲା । ଏବେ ମଧ୍ୟ ତାହା ମନେ ହୁଏ । ଶୁଣିଛି ସମୟ ବିତିଗଲେ ସବୁ କିଛି ସମସ୍ତେ ଭୁଲିଯାନ୍ତି । କିମ୍ବା ମନ ଭିତରେ ତା'ର ସ୍ମୃତି କ୍ରମଶଃ ଅସ୍ପଷ୍ଟ ହୋଇଯାଏ । ଭାବିଲେ ଭାରି ଭୟ ହୁଏ ।

- ଆପଣଙ୍କର ମଧ୍ୟ ?

- ହଁ ।

- ଜାଣେନା ଭୁଲିଯିବା ସମ୍ଭବ ହେବ କି ନାହିଁ । ଜାଣିନାହିଁ ,କମ୍ ମନେ ପଡ଼ିବ କି ନାହିଁ । କିନ୍ତୁ କେବଳ ବ୍ରତୀ ନୁହେଁ ... ଯେତେବେଳେ ଭାବେ କଣ ପାଇଁ ଏତେ ମୃତ୍ୟୁ ବରଣ କଲେ ? ଜାଣନ୍ତି ଜେଲ୍‌ରୁ ମୁକୁଳିବା ପରେ ପ୍ରଥମେ କଣ ମନକୁ ଆଘାତ ଦେଇଥିଲା ?

- କ'ଣ ?

- ଯେତେବେଳେ ଦେଖିଲି ସବୁ ସ୍ୱାଭାବିକ,ଚମତ୍କାର ଯେପରି ଯାହା ହେବାର ହୋଇଯାଇଛି । ଏବେ ସବୁ ଶାନ୍ତ-ଚାରିଆଡ଼େ ଏହି ଭାବ-ସେତେବେଳେ ଛାତି ଫାଟି ଗଲା ପରି ଲାଗିଥିଲା ।

- କିନ୍ତୁ ଏବେତ ସବୁ ଶାନ୍ତ ହୋଇଯାଇଛି ନନ୍ଦିନୀ ?

- ନା ! ନନ୍ଦିନୀ ଚିତ୍କାର କରିଉଠିଲା । ସୁଜାତା ଅବାକ୍,ବିମୂଢ଼ ।

- କିଛି ଶାନ୍ତ ହୋଇନି,ହୋଇ ପାରିବ ନାହିଁ । ସେତେବେଳେ କିଛି ଶାନ୍ତ ନଥିଲା । ଏବେ ମଧ୍ୟ ନାହିଁ । କୁହନ୍ତୁ ନାହିଁ ଯେ ସବୁ ଶାନ୍ତ ହୋଇଯାଇଛି । ଯାହାହେଲେ ମଧ୍ୟ ଆପଣ ବ୍ରତୀର ମାଆ । ସବୁ ଯେ ଶାନ୍ତ ହୋଇଯାଇଛି ଏହା ଆପଣଙ୍କର କହିବା ବା ବିଶ୍ୱାସ କରିବା ଉଚିତ୍ ନୁହେଁ । କେଉଁଠୁ ଏପ୍ରକାର ଆତ୍ମସନ୍ତୋଷ ଆସେ ?

- କିଛି କ'ଣ ସତରେ ଶାନ୍ତ ହୋଇନାହିଁ ।

- ନା ହୋଇନି । ସେମାନେ କାହିଁକି ମୃତ୍ୟୁବରଣ କଲେ ? କ'ଣ ଶେଷ ହୋଇଛି ? ମଣିଷ ସୁଖରେ ଅଛି ? ରାଜନୀତିର ଖେଳ ଶେଷ ହୋଇଛି ? ଏହା କ'ଣ ସୁନ୍ଦର ଦୁନିଆଁ ?

- ନା ।

- ଶତ ସହସ୍ର ପିଲାଙ୍କୁ ବିନା ବିଚାରରେ ଜେଲ୍‌ରେ ଅଟକ ରଖାଯାଇଛି । ତା ସତ୍ତ୍ୱେ ଆପଣ କହିବେ ସବୁ ଶାନ୍ତ ହୋଇଯାଇଛି । ନନ୍ଦିନୀ ବାରମ୍ବାର ମୁଣ୍ଡ ହଲାଇଲା । କହିଲା ଏକଥା କହି ମତେ ସମସ୍ତେ ବୁଝାନ୍ତି । ମୋ ମା' କୁହନ୍ତି ତୋର ଆଉ କିଛି କରିବାର ତ ନାହିଁ । ତେବେ ବାହା ହୋଇ ସଂସାର କରିବୁ ନାହିଁ କାହିଁକି ?

- ତୁମେ କ'ଣ ....

- ସ୍ୱାସ୍ଥ୍ୟଗତ କାରଣରୁ । ନଚେତ୍ ବାହାରିବାକୁ ଦେଇନଥାନ୍ତେ । ମୁଁ ମରିବାକୁ ଚାହୁଁନି । ବାହାରକୁ ନଆସିଲେ ମୋର ଚିକିତ୍ସା ହୋଇନଥାନ୍ତା ।ଏବେ ମୁଁ ଗୃହବନ୍ଦୀ ।

- କ'ଣ ପାଇଁ ଚିକିତ୍ସା ?

- ଓ ଆପଣ ତା'ହେଲେ ଜାଣିପାରିନାହାନ୍ତି ? ତୀବ୍ର ଆଲୁଅ ସାମ୍ନାରେ ଅଠଚାଳିଶ ଘଣ୍ଟା, ବାସ୍ତରୀ ଘଣ୍ଟା ରହିବା ଫଳରେ ମୋ ଆଖିର ସ୍ନାୟୁ ନଷ୍ଟ ହୋଇଯାଇଛି । ଡାହାଣ ଆଖିରେ କହିବାକୁ ଗଲେ ମୁଁ କିଛି ଦେଖିପାରୁନି । ଉପରୁ ଦେଖିଲେ ଜଣାପଡେ,କିଛି ହୋଇନାହିଁ ।

- ନା,ମୁଁ ତ ଜାଣିପାରିଲି ନାହିଁ ।

- ଗୋଟିଏ ଆଖି ପୁରାପୁରି ନଷ୍ଟ ହୋଇଯାଇଛି ।

- ତୁମେ ଏବେ କ'ଣ କରିବ ?

- ଜାଣେନି । ତେବେ ଆଖିର ଚିକିତ୍ସା ମତେ କରିବାକୁ ହେବ । ତା'ପରେ ଆଉ କ'ଣ କରିବି ସେକଥା ଜାଣେନି । ତେବେ ମା କହିବା ଅନୁସାରେ ସନ୍ଦୀପକୁ ବାହା ହୋଇପାରିବି ନାହିଁ ।

- ସନ୍ଦୀପ କିଏ ?

- ଗୋଟିଏ ପିଲା,ଭଲ ଚାକିରି କରେ । ଏବେ ବୋଧହୁଏ ଆମ ପରି ଝିଅମାନଙ୍କୁ ବିଭା ହେବା ଧୀମାନ୍ ରାୟଙ୍କ ଲେଖା କବିତା ପରି ଏକ ସଉକ୍ ହୋଇଛି । ତା'ନହେଲେ ଅନ୍ୟ କିଛି ତ କାରଣ ନାହିଁ । କଣ ପାଇଁ ସେ ମତେ ବାହା ହେବାକୁ ଏତେ ଆଗ୍ରହୀ ।

- ତୁମେ କଣ କରିବ ନନ୍ଦିନୀ ?

- କହିଲି ପରା ଜାଣେନି । ଏବେ ମଧ କେତେଗୁଡିଏ କଥାରେ ଖୁବ୍ ବିଚଳିତ ତଥା ବିବ୍ରତ ଲାଗୁଛି । ସବୁ କିଛି ଯେପରି ଅଜଣା ଅଚିହ୍ନା । ନିଜକୁ କୌଣସି ବିଷୟରେ ଏକାଗ୍ର କରିପାରୁନି । ଗତ କେତେବର୍ଷର ଅଭିଜ୍ଞତା ମୋତେ ତଥାକଥିତ ଓ ସ୍ୱାଭାବିକ ପରିସ୍ଥିତି ପାଇଁ ଅଯୋଗ୍ୟ କରିଛି - ଯାହାକୁ ଆପଣମାନେ ସ୍ୱାଭାବିକ ମନେକରନ୍ତି ସେଇଟା ମୋ ପାଇଁ ଅସ୍ୱାଭାବିକ ମନେ ହୁଏ । କ'ଣ କରିବି କୁହନ୍ତୁ ?

- ନା କିଛି କହିବି ନାହିଁ ।

- ମୋ ବନ୍ଧୁମାନଙ୍କ ଭିତରୁ କହିବାକୁ ଗଲେ କେହି ପ୍ରାୟ ବଞ୍ଚିନାହାନ୍ତି । ସେହିସବୁ କଥା, ଯେଉଁମାନଙ୍କ କଥା ମୋର ଅହରହ ମନେ ପଡ଼େ । ସେମାନଙ୍କର କଥା କହିବା ପାଇଁ କିମ୍ବା ଶୁଣିବା ପାଇଁ କେହି ଜଣେ ହେଲେ ନାହାନ୍ତି ।

- ତୁମ ଘରେ ତ ସମସ୍ତେ ଅଛନ୍ତି ?

- ହଁ ଅଛନ୍ତି । ଏଇଟା ଆମ ଘର ନୁହଁ । ଜଣେ ଆତ୍ମୀୟଙ୍କର । ବାପା ମା କଲିକତାରେ ରୁହନ୍ତି ନାହିଁ ।

- ସେମାନଙ୍କ ସହିତ ........

- ସେମାନଙ୍କ ପାଇଁ ମୁଁ ଯେ ଏକ ସମସ୍ୟା ତାହା ଜାଣିଛି । କେଜାଣି କ'ଣ କରିବି ? ହୁଏତ ଶୁଣିବେ ....

- କ'ଣ ?

ନନ୍ଦିନୀ ହସିଲା । ସୁନ୍ଦର ଉଜ୍ଜ୍ୱଳ ହସ । କହିଲା, ହୁଏତ ଶୁଣିବେ ପୁଣିଥରେ ମତେ ଧରିନେଇ ଯାଇଛନ୍ତି । କ'ଣ ଘଟିବ, କିପରି କହିବି କୁହନ୍ତୁ ?

ସୁଜାତା ବସି ରହିଲେ । ଅଥଚ ଏବେ ବସିବା ପାଇଁ ଆଉ ସମୟ ନାହିଁ । ସନ୍ଧ୍ୟା ନଇଁ ଆସିଲାଣି । ଶୀତଦିନର ସନ୍ଧ୍ୟା ଝଟ୍‌କରି ଆସେ । ଏବେ ତାଙ୍କର ଘରକୁ ଫେରିବା କଥା । ଅଥଚ ଯିବାକୁ ପାଦ ଉଠୁନି ।

- ଆପଣ ଯିବେନି ?

- ଏଥର ଉଠିବି ।

- ଆଉ କିନ୍ତୁ ଦେଖା ହେବନି ।

- ତୁମେ କ'ଣ କୁଆଡ଼େ ଯିବ ?

- ନା ଏଠାରେ ରହିବି । କିନ୍ତୁ ଆଉ ଦେଖା ହେଲେ କ'ଣ ହେବ ?

ସୁଜାତା ମୁଣ୍ଡ ହଲାଇଲେ । କିଛି ହେବନି । କାରଣ ନନ୍ଦିନୀ ଏବଂ ତାଙ୍କ ଜୀବନ ଦୁଇଟି ସମାନ୍ତରାଳ ରେଖା - କେଉଁଠି ଯେ ମିଳିତ ହେବେ, ସେପରି ବିନ୍ଦୁଟିଏ ମଧ୍ୟ ରେଖା ଦୁଇଟିରେ ମିଳିବ ନାହିଁ ।

- ତୁମକୁ ଗୋଟିଏ ଜିନିଷ ଦେବି ।

- କ'ଣ ?

- ଏଇଟା ତୁମ ପାଖରେ ଥାଉ ।

ବ୍ରତୀର ଫଟୋ ସବୁବେଳେ ତାଙ୍କ ବ୍ୟାଗ୍‌ରେ ଥାଏ ।

ନନ୍ଦିନୀ ଫଟୋଟି ନେଲା । ଖଟ ଉପରେ ରଖିଲା । ତା'ପରେ କହିଲା ମୋ ପାଖରେ ଏବେ ଆଉ କିଛି ନାହିଁ । ଆଗରୁ ଥିଲା ।

- ମୋ ପାଖରେ ଆଉ ଅଛି ।

- ଏ ଫଟୋ କଲେଜରେ କିଏ ଉଠାଇଥିଲା ବୋଧହୁଏ ।

- ଜାଣିଛି । ଅନିନ୍ଦ୍ୟ ।

- ଆସୁଛି ନନ୍ଦିନୀ । ତୁମେ, ତୁମେ ଭଲରେ ରୁହ । କେବେ କିଛି ଦରକାର ହେଲେ ମତେ ଜଣାଇବ ।

- ଜଣାଇବି ।

ନନ୍ଦିନୀ ହସି କହିଲା । କିନ୍ତୁ ସୁଜାତା ବୁଝିଲେ ନନ୍ଦିନୀ ଜଣାଇବ ନାହିଁ । ନନ୍ଦିନୀ ମଧ ଜାଣିଲା ସେ ଜଣାଇବ ନାହିଁ । ଦୁଇଜଣ ପରସ୍ପର ନିକଟରେ ପୁଣି ଅପରିଚିତ ହୋଇଯିବେ । କେବଳ ସୁଜତାଙ୍କ ପୃଥିବୀ ଆଉ ପୂର୍ବଭଳି ରହିବ ନାହିଁ । ବ୍ରତୀ ସେଦିନ ନୀଳସାର୍ଟ ପିନ୍ଧି କାହିଁକି ବାହାରିଗଲା, କାହିଁକି **ହଜାରେ ଚୌରାଶୀ** ହୋଇଗଲା-ଆଜି ଦିନସାରା ସୁଜାତା ତାରି ବ୍ୟାଖ୍ୟା ଟିକିଏ ଟିକିଏ କରି ଖୋଜି ପାଇଥିଲେ । ବାକି ଜୀବନଟା ସେହି ଛୋଟ ଛୋଟ ଖଣ୍ଡକୁ ଏକାଠି କରି ମିଶାଉ ମିଶାଉ କଟିଯିବ ।

- ଆପଣଙ୍କୁ ଛାଡ଼ି ଦେଇ ଆସେ, ବାହାରେ ଆଲୁଅ ନାହିଁ ।

ନନ୍ଦିନୀ ଅଣ୍ଡାଳି ଅଣ୍ଡାଳି ଦୁଆର ପର୍ଯ୍ୟନ୍ତ ଗଲା । ତା' ଚାଲି ଦେଖି ମନେ ହେଲା ବୋଧହୁଏ ତା'ର ଦୁଇ ଆଖିର ଦୃଷ୍ଟିଶକ୍ତି କ୍ଷତିଗ୍ରସ୍ତ ।

- ବାହାରକୁ ଆସିବ ?

- ନା । ମୁଁ ବାହାରକୁ ବାହାରି ପାରିବି ନାହିଁ । ଗୃହବନ୍ଦୀ । ତା'ଛଡ଼ା କେହି ସାଙ୍ଗରେ ନଥିଲେ ମୋର ସାହସ ହୁଏନି ।

- ତା'ହେଲେ ଥାଉ ।

ସୁଜାତା ତା'ର କପାଳ ଓ ମୁହଁ ଆଉଁସି ଦେଲେ । ତା'କୁ ଛାତିରେ ଜାକି ଧରିବା ପାଇଁ ଖୁବ ଇଚ୍ଛା ହେଲା । ତାକୁ ଝୁଲାଇବେ । ବ୍ରତୀକୁ ଯେମିତି ଛାତିରେ ଜାକି ଧରୁଥିଲେ ଠିକ୍ ସେପରି ତାକୁ ଟାଣି ଧରିବାକୁ ମନ ଚାହିଁଲା । ସ୍ୱାଭାବିକ, ଜୀବନ୍ତ କ୍ଷୁଧିତ ଇଚ୍ଛା । ସମୁର ମା' ଯେଉଁ ଇଚ୍ଛା ଦ୍ୱାରା ବଶୀଭୂତ ହୋଇ ଶ୍ମଶାନରେ ବିକଳ ହୋଇ ବାହୁନିଥିଲେ 'ତାକୁ ମୋ କୋଳକୁ ଆଣି ଦେ । ତାକୁ ଛାତିରେ ଧରିଲେ ମୁଁ ଶାନ୍ତ ହେବି, ଆଉ କାନ୍ଦିବି ନାହିଁ ।'

- ଦିନେ ମୁଁ ଓ ବ୍ରତୀ ଗପ କରିକରି ଆପଣଙ୍କ ଘର ପର୍ଯ୍ୟନ୍ତ ଚାଲି ଆସିଥିଲୁ । ବ୍ରତୀ କହିଥିଲା, ଆପଣଙ୍କ ପାଖକୁ ମତେ ଦିନେ ନେଇଯିବ । ଅନେକ ଦିନ ଆଗର କଥା ।

ସୁଜାତା ମୁଣ୍ଡ ଟୁଙ୍ଗାରିଲେ । ଅନେକ ଦିନ ନୁହେଁ ନନ୍ଦିନୀ, ହୁଏତ ଚାରିବର୍ଷ ତଳର କଥା । କିନ୍ତୁ ବର୍ଷମାସର ହିସାବ ନୁହେଁ ଅନ୍ୟ ହିସାବରେ ସେଇଟା ଅନେକ ଦିନ ଆଗର କଥା । ସେହିସବୁ ସ୍ୱାଭାବିକ ଦିନ ପରେ ଯେଉଁ ଦିନର ଶେଷରେ ଥରେ ବ୍ରତୀର ମା'କୁ ଦେଖିବାକୁ ଆସିହୁଏ ସେସବୁ ଦିନ ପରେ ଅଜସ୍ର ଆଲୋକ ବର୍ଷ କଟି ଯାଇଛି ।

ସୁଜାତା ଧୀର ସ୍ୱରରେ କହିଲେ, ଆସୁଛି ।

ନନ୍ଦିନୀ କିଛି କହିଲା ନାହିଁ । ପଛକୁ ଫେରି ମଇଳା ଅନ୍ଧାରୁଆ କାନ୍ଥରେ ହାତ ରଖିଲା । ତା'ପରେ ଧୀରେ ଧୀରେ ଭିତରକୁ ଚାଲିଗଲା । ତା'ର ପ୍ରତିଟି ପଦକ୍ଷେପ ତା'କୁ ସୁଜାତାଙ୍କ ନିକଟରୁ କେତେ ଦୂରକୁ ନେଇଗଲା । ସୁଜାତା ବାହାରି ଆସିଲେ । କଲିକତାର ରାସ୍ତା ।

❑❑❑

# ।। ସାୟାହ୍ନ ।।

ଶୀତ ଦିନ ସନ୍ଧ୍ୟା ଶୀଘ୍ର ଆସିଯାଏ, ସେଥିପାଇଁ ଏତେ ଅନ୍ଧାର । ଅନ୍ଧାର ରହିଛି ବୋଲି ସୁଜାତାଙ୍କ ଘରର ପ୍ରତି କୋଠରୀର ଆଲୋକ ଏତେ ଉଜ୍ଜ୍ୱଳ । ଗତ କେତେ ଦିନ ହେବ ବ୍ୟାଙ୍କ୍‌ରୁ ଘରକୁ ଫେରି ସୁଜାତା ସାବୁନ ପାଣିରେ କନା ବୁଡ଼ାଇ ଝରକାର କାଚ ସବୁ ପୋଛି ପରିଷ୍କାର କରନ୍ତି । ଯାହା ଫଳରେ ଆଲୁଅର ଉଜ୍ଜ୍ୱଳତା ଏପରି ବାହାରକୁ ବିଚ୍ଛୁରିତ ହେଉଛି । ବର୍ଷା ହୋଇଥିଲା କେତେ ଦିନ ଆଗରୁ । ଗତକାଲି ମଧ୍ୟ ସାମାନ୍ୟ ବର୍ଷା ହୋଇଛି । ସେଥିପାଇଁ କେତେ ଗୁଡିଏ ପୋକ ଶୀତ ଥିବା ସତ୍ତ୍ୱେ ବାହାରପଟୁ କାଚରେ ଡେଣା ପିଟୁଛନ୍ତି । ଆଲୋକ ବୃତ୍ତ ଚାରିପଟେ ଘୁରୁଛନ୍ତି । ଏମିତି ହୁଏ, ଏମିତି ହୋଇଥାଏ । କେବଳ ଯାହାସବୁ ସ୍ୱାଭାବିକ, ନନ୍ଦିନୀ ପାଇଁ ସେ ସବୁ, ସବୁଦିନ ପାଇଁ ଅସ୍ୱାଭାବିକ ହୋଇ ରହିବ । ନନ୍ଦିନୀ ଗୋଟିଏ ଚାଦର ଘୋଡ଼ି ହୋଇଥିଲା । ବ୍ରତୀ ଶୀତଦିନେ ପୁରୁଣା ଜୀର୍ଣ୍ଣ ଶାଲଟା ଘୋଡ଼ାଇ ହେବାକୁ ପସନ୍ଦ କରୁଥିଲା ।

ଦିବ୍ୟନାଥ ଅନେକ ଆଗରୁ ଦୁଆର ପାଖକୁ ଯାଆସ କରିଛନ୍ତି ନିଶ୍ଚୟ । କାହିଁକି ନା ଏବେ ସେ ମଝି ଦୁଇବର୍ଷର କୋମଳ କଣ୍ଠସ୍ୱରକୁ ଭୁଲିଯାଇ ଠିକ୍ ପୂର୍ବ ଦିବ୍ୟନାଥଙ୍କ ଭଳି ଖୁବ୍ ବଡ଼ ପାଟିରେ ଚିତ୍କାର କରି ପଚାରିଲେ ।

- ଏତେ ଡ଼େରି କରି ଘରକୁ ଫେରି ପାରିଲ ! ଆଶ୍ଚର୍ଯ୍ୟ !

ସୁଜାତା କୌଣସି ଉତ୍ତର ଦେଲେ ନାହିଁ । ଦିବ୍ୟନାଥ ଏବଂ ସେହି ଟାଇପିଷ୍ଟ ମହିଳାଙ୍କ ଆଗକୁ ବ୍ରତୀ ଯିବା ସମୟଟା ମନେ ମନେ ହିସାବ କଲେ । ହିଁ ସେହି ଦିନକୁ ବ୍ରତୀ ତା' ବୃତ୍ତି ଟଙ୍କା ଘର ଖର୍ଚ୍ଚ ପାଇଁ ଦେବାକୁ ଆରମ୍ଭ କରିଥିଲା । ଆଜି ସୁଜାତା ଜାଣୁଛନ୍ତି ଯେ ବ୍ରତୀ ସେ ଦିନ ଘର ଛାଡ଼ି ଚାଲି ନଯିବାର କାରଣ ସେ ନିଜେ । ବ୍ରତୀ ତୁ ମତେ କୌଣସି କଥା କହିଲୁନି କାହିଁକି ? ମୋ ପ୍ରତି ତୋ ଭଲ ପାଇବା ଅନ୍ୟ ପ୍ରକାର ହୋଇ ଯାଇଥିଲା, ଛୋଟ ଝିଅ ପ୍ରତି ବାପର ଭଲ ପାଇବାପରି । ସେଥିପାଇଁ ନା ?

ସୁଜାତା ବାଟଘର ପାରି ହୋଇ ଆସ୍ତେ ଆସ୍ତେ ଡ୍ରଇଁ ରୁମ୍‌କୁ ଗଲେ । ପ୍ରତ୍ୟେକ ଫୁଲଦାନୀରେ ଫୁଲ, ଉଜ୍ଜ୍ୱଳ ଆଲୋକ । ଗୋଲାପର ରଙ୍ଗ ଟକ୍ ଟକ୍ ଲାଲ୍ । ଏପରି ହୁଏ ଲାଲ୍ ଗୋଲାପର ତୋଡ଼ା, ଉଜ୍ଜ୍ୱଳ ଆଲୋକରେ ଯେଉଁମାନେ ସେମାନଙ୍କ ବିଶ୍ୱାସ ଗଚ୍ଛିତ ରଖିଥିଲେ ସେଥିରୁ ସେମାନେ ସେମାନଙ୍କର ବିଶ୍ୱାସକୁ କେବେଠାରୁ ଫେରେଇ ନେଇଛନ୍ତି । ତଥାପି ଗୋଲାପର ରଙ୍ଗ କେତେ ଗାଢ଼ ଲାଲ୍, ଆଲୋକ କେତେ ଉଜ୍ଜ୍ୱଳ-ଧୋକାବାଜ୍ । ନନ୍ଦିନୀ ଓ ବ୍ରତୀଙ୍କ ସହିତ ଏମାନେ ମଧ୍ୟ ବେଇମାନୀ କରିଛନ୍ତି । ସୁଜାତା ମୁଣ୍ଡ ହଲାଇଲେ ।

ବଡ଼ ଟେବୁଲ୍‌ଟା ତଳ ବାରଣ୍ଡାକୁ ବାହାର କରାଯାଇଛି । ସ୍କୁଲରେ ପଢ଼ିବା ବେଳେ

ବର୍ଷା ଦିନରେ ଅନେକଥର ଏହି ଟେବୁଲ୍ ବାହାର କରି ବ୍ରତୀ ସାଙ୍ଗମାନଙ୍କ ସାଙ୍ଗରେ ଟେବୁଲ୍ ଟେନିସ୍ ଖେଳିଛି । ଥରେ ଏହି ବାରଣ୍ଡାରେ ବ୍ରତୀ ପ୍ରଭୃତି ରବୀନ୍ଦ୍ର ଜୟନ୍ତୀ କରିଥିଲେ । ବାବୁଲୁ ସଦାବେଳେ ଅତି ଚାଲବାଜ ଟୋକା । ସେହି ଅଳ୍ପ ବୟସରେ ବାବୁଲୁ ଲେଖିଥିଲା, 'ରବୀନ୍ଦ୍ରନାଥ ଅତି ଗରିବ ଥିବାରୁ ଅଷ୍ଟମ ଶ୍ରେଣୀରେ ପଢ଼ା ଛାଡ଼ି କବିତା ଲେଖି ପଇସା ରୋଜଗାର କରୁଥିଲେ । ବ୍ରତୀ ରବୀନ୍ଦ୍ର ନାଥଙ୍କର 'ବୀର ପୁରୁଷ' ଆବୃତ୍ତି କରିଥିଲା । ତା'ପରେ କେତେ କେତେ ଆଲୋକବର୍ଷ ବିତି ଯାଇଛି ।

ଟେବୁଲ ଉପରେ ଧୋବ ଫର ଫର ଧଳା ଚାଦର ପଡ଼ିଛି । ବ୍ରତୀର ଜୋତା ମାଡ଼ରେ ଟେବୁଲର ଗୋଟିଏ ଗୋଡ ଘସରି ଯାଇଥିଲା । ଟେବୁଲ ଉପରେ କଣ୍ଟା ଚାମଚ, ତଉଲିଆ, ମଦ ଗ୍ଲାସ, ପାଣି ଗ୍ଲାସ, ଖାଦ୍ୟ ପରଷିବାର ଜାଗା, କଫିପ୍ଲେଟ ସବୁ କିଛି ସଜା ହୋଇ ରହିଛି । କେବଳ ଏଠାରେ ବ୍ରତୀ ନାହିଁ, କେଉଁଠି ବି ନାହିଁ । ବ୍ରତୀର ଘରେ, ଯେଉଁ ଘରେ ସେ ବଡ ହେଲା, ଜୀବନ କଟାଇଲା ସେହି ଘରେ ସେହି ବ୍ରତୀକୁ ଖୋଜି ପାଇବା ଏତେ କଷ୍ଟକର ?

ସୁଜାତା ଲକ୍ଷ୍ୟ କଲେ କଳା ରଙ୍ଗ ଉପରେ ଲାଲ ଓ ସୁନେଲୀ ଚେରି ଫୁଲ ଅଙ୍କା ହୋଇଥିବା ଚାୟନା ସେଟ୍ ରଖା ହୋଇଛି । ଏ ଗୁଡାକ ନୀପାର । ନୀପା ତେବେ ଆସି ଯାଇଛି ।

ଖାଇବା ଘରକୁ ଗଲେ । ଟେବୁଲ ଉପରେ ସନ୍ଦେଶ ପ୍ୟାକେଟ୍, ରସଗୋଲା ଓ ଦହି ହାଣ୍ଡି ଓ 'ୱାଲଡର୍ଫ ଏଣ୍ଡ ସବିର'ର ନାଁ ଲେଖା ହୋଇଥିବା ଖାଇବା ପ୍ୟାକେଟ୍ ସବୁ ସଜା ହୋଇ ରହିଛି । ଆଜି ପାଇଁ ଖାଇବା ଅର୍ଡର ସେଠାରେ ଦିଆ ହୋଇଥିଲା । ପାଖ ଟେବୁଲରେ ବିନି କଟ୍‌ଗ୍ଲାସର ପାତ୍ରରେ ସସ୍, ଭିନିଗାର, ସୋରିଷ,ଲୁଣ, ଗୋଲମରିଚ ଗୁଣ୍ଡ, ସାଲାଡ, କଞ୍ଚାଲଙ୍କା କାଟି ଭିଜାଇ ରଖିଛି ।

-'ହେମ ।'

ହେମ ଦଉଡି ଆସିଲା ।

- ଗିଲାସେ ଲେମ୍ବୁ ପାଣି ଦେଲୁ ।

ହେମ ଆଣିବାକୁ ଗଲା । ଦିବ୍ୟନାଥ ଆସିଲେ ।

ପୌଢ଼,ଭୋଗୀ, ମାଂସଳ ଚେହେରା । ଏହି ପ୍ରଥମ ଥର ସୁଜାତାଙ୍କ ମନେ ହେଲା ଦିବ୍ୟନାଥଙ୍କର ଏପରି ବେକ ପାଖରୁ ବାଳ କାଟିବା, ମୁହଁରେ ସ୍ନୋ ମାଖିବା - କେତେ କୁତ୍ସିତ ଦିଶୁଛି ସତେ ? ମନେ ହେଲା ଦିବ୍ୟନାଥ ଚିକନ ପଞ୍ଜାବୀ ଏବଂ ଏତେ ଚଉଡ଼ା ବର୍ଡର ଥିବା ଶାଲ ବ୍ୟବହାର କରିନଥିଲେ ମଧ୍ୟ ଚଳିଥାନ୍ତା । ଆଜି ପାଇଁ ଜୋତା ହଳକ ମଧ୍ୟ ନୂଆ; ସବୁଠାରୁ ଦାମି ଗେଞ୍ଜି ଦିବ୍ୟନାଥ ପିନ୍ଧିଛନ୍ତି ବୋଲି ସୁଜାତାଙ୍କର ମନେ ହେଲା ।

- ତୁମେ ଭାବିଛ କ'ଣ ? ଜାଣ, ପ୍ରାୟ ପଚାଶ ଜଣ ନିମନ୍ତ୍ରିତ ଅତିଥି ଆସୁଛନ୍ତି ?

- ଜାଣିଛି ।

- କ'ଣ ?

- ସବୁ ତ ବ୍ୟବସ୍ଥା କରା ହୋଇଛି । ନୀପା ଆସିଛି । ତୁମେ ତ ଘରେ ଅଛ । ସବୁ ବ୍ୟବସ୍ଥା ହେବା ପରେ ଅଯଥା ଅଶାନ୍ତି କରନା ।

- ଅଶାନ୍ତି କରୁଛି ମୁଁ ? ତୁମେ ଭାବିଛ କ'ଣ ?

- ତୁମେ ଏହି ମୁହୂର୍ତ୍ତରେ ଏଠାରୁ ନଗଲେ ମୁଁ ପୁଣି-ଘର ଛାଡି-ଚାଲିଯିବି-ଆଉ ଫେରିବି ନାହିଁ ।

ସୁଜାତା ରହି ରହି କଥା ଗୁଡିକ କହିଲେ । ଘୃଣା, ପ୍ରଚଣ୍ଡ ଘୃଣା ହେଉଛି । ଦିବ୍ୟନାଥ ଓ ଟାଇପିଷ୍ଟ ମହିଳା, ଦିବ୍ୟନାଥ ଓ ସୁଜାତାଙ୍କ ଜନୈକା ଦୂରସମ୍ପର୍କୀୟା ନଣନ୍ଦ । ଦିବ୍ୟନାଥ ଓ ତାଙ୍କର ଖାଡି ଭାଉଜ ।

ଦିବ୍ୟନାଥ ଯେପରି ଗାଲରେ ଶକ୍ତ ଥାପଡ ଖାଇଲେ । ଚଉତ୍ରିଶ ବର୍ଷର ବୈବାହିକ ଜୀବନରେ ସୁଜାତା ସ୍ୱାମୀଙ୍କୁ ଏପରି କଥା କେବେ କହି ନଥିଲେ ।

- ତୁମେ ସାରାଦିନ କେଉଁଠି ଥିଲ ସେ କଥା କ'ଣ ପଚାରି ପାରିବି ନାହିଁ ?

- ନା' ।

- କ'ଣ ହେଲା ?

- ଦୁଇବର୍ଷ ପୂର୍ବରୁ ଦୀର୍ଘ ବତିଶ ବର୍ଷ ଧରି ତୁମେ ସନ୍ଧ୍ୟାଟା କେଉଁଠି କାହା ପାଖରେ କଟାଉଥିଲ, କାହାକୁ ନେଇ ଦଶ ବର୍ଷ ଧରି ଗସ୍ତରେ ଯାଇଥିଲ, ତୁମର ପୂର୍ବତନ ଟାଇପିଷ୍ଟର ଘରଭଡା କାହିଁକି ଦେଉଥିଲ-ଏସବୁ କଥା ମୁଁ କେବେ ହେଲେ ତୁମକୁ ପଚାରି ନାହିଁ । ତୁମେ ମତେ କୌଣସି କଥା କେବେ ପଚାରି ପାରିବ ନାହିଁ । କୌଣସି ଦିନ ବି ନୁହେଁ ।

- ହେ ଭଗବାନ !

- ଅଳ୍ପ ବୟସରେ ଏସବୁ କଥା ବୁଝି ନଥିଲି । ପରବର୍ତ୍ତୀ ସମୟରେ ତୁମ ମା' ତୁମର ପ୍ରତ୍ୟେକଟି ପାପ-ହଁ, ପାପକୁ ଲୁଚାଉ ଥିଲେ ବୋଲି ପଚାରିବାକୁ ଇଚ୍ଛା ହୋଇନି । ପରେ ମୋର ଜାଣିବାର ଆଗ୍ରହ ନଥିଲା । ତେବେ ତୁମେ ଘରଠୁ, ନିଜ ପରିବାରଠାରୁ ଯେପରି ଲୁଚେଇ ସମୟ କଟାଉଥିଲ ମୁଁ ସେପରି କରିନି । ଆହୁରି ଶୁଣିବାକୁ ଚାହଁ ?

- ତୁମେ ଆଜି... ।

- କାହିଁକି ନୁହେଁ ? ଆଜି କାହିଁକି ନୁହଁ ? ତୁମେ ଗଲ ଏଠୁ ।

- ବାହାରିଯିବି ?

- ହଁ, ବାହାରିଯାଅ ।

'ବାହାରିଯିବା' କଥା ସୁଜାତା ଆଦେଶ ଦେବା ସ୍ୱରରେ କହିଲେ । ଦିବ୍ୟନାଥ ବେକ ତଳ ପୋଛି ପୋଛି ବାହାରି ଗଲେ ।

ଆଜି ଦିନଟା ପରେ ସୁଜାତା ଆଉ ଏଠାରେ ରହିବେ ନାହିଁ । ଆଉ ରହିପାରିବେ ନାହିଁ । ଯେଉଁଠି ଶାନ୍ତି ନାହିଁ, ସେଠାରେ ସେ ମୁହୂର୍ତ୍ତେ ରହିପାରିବେ ନାହିଁ । ବ୍ରତୀ ବଞ୍ଚିଥିବା ସମୟରେ ଥରେ ଯଦି ନିଜ ମନର କଥା ଦିବ୍ୟନାଥଙ୍କୁ ରୋକଠୋକ୍ ଭାବେ କହିପାରିଥାନ୍ତେ ! କହିବା ପରେ ବ୍ରତୀ ହାତ ଧରି ଘରୁ ବାହାରି ଯାଇଥାନ୍ତେ ! ତେବେ କଣ କିଛି ଫେରି ପାଇଥାନ୍ତେ । କେବଳ ସେ ବ୍ରତୀର ଆଉ ଟିକେ ଅଧିକ ନିକଟତର ହୋଇପାରିଥାନ୍ତେ । ବ୍ରତୀ ଅନ୍ତତଃ ଜାଣି ପାରିଥାନ୍ତା,ସେ ସୁଜାତାଙ୍କୁ ଯେପରି ଭାବିଛି ସେ ସେପରି ନୁହଁନ୍ତି । ବ୍ରତୀ ତାଙ୍କୁ ଜାଣି ପାରିଲା ନାହିଁ ।

ହେମ ଆସି ସରବତ ଦେଲା । ସୁଜାତା ଗୋଟିଏ ଢ଼ୋକରେ ସେତକ ପିଇଲେ । କହିଲେ, ହେମ ଗାଧୋଇବା ପାଇଁ ଗରମ ପାଣି ଦେଲୁ । ତୁ ଉପରକୁ ଭାରି ବାଲଟି ଟେକି ଆଣିବୁ ନାହିଁ । ନାଥୁ ଅଛି ତ ?

- ନାଥୁ ପଡ଼ିଶାଘରୁ ବରଫ ଆଣିବାକୁ ଯାଇଛି ।

- କାହିଁ ଘରେ ବରଫ ଜମି ନଥିଲା ?

- ନା, ମିସ୍ତ୍ରୀ ଆସି କହିଲା ଫ୍ରିଜ୍ ଖରାପ ହୋଇଛି । ସଜାଡିବାକୁ ଷାଠିଏ ଟଙ୍କା ଲାଗିବ, ଏତେ ଶୀଘ୍ର ମଧ ସଜାଡି ହେବନି ।

- ତା'ହେଲେ ଗରମ ପାଣି ଥାଉ ।

- ମା' ଏବେ ଗାଧାଅ ନାହିଁ, ପରେ ଗାଧୋଇବ । ଦିନସାରା କିଛି ଖାଇଥିଲ ?

- ନା, ଇଚ୍ଛା ହେଲାନି ।

- ଏବେ ଉପରକୁ ଯାଉଛ ତ ?

- ହଁ ।

- କ'ଣ ଟିକେ ଖାଇବ ?

- ନା, ନୀପା ଆସିଲା କେତେବେଳେ ?

- ସକାଳେ । ସେ ତ ଏଇଠି ଖାଇଲେ ।

- ଝିଅକୁ ଆଣିଛି ?

- ନା, ତା' ସ୍କୁଲରେ କ'ଣ ସବୁ ହେଉଛି ।

- ଘର ସବୁ କିଏ ସଜାଇଲା ?

- କାହିଁକି ବଡ଼ ଭାଉଜ ସବୁ କଲେ ।

- କପ୍, ଥାଳିଆ, ପ୍ଲେଟ ସବୁ ବାହାର କଲା କିଏ ?

- ସବୁ ସାନ ଦିଦି କରିଛନ୍ତି । ତୁମେ ଯିବାପରେ ସେ ଆସି ମତେ ଗାଳି ଦେଲେ । ମୁଁ କାମ ନକରି ବସି ବସି ଖାଉଛି, ଛୋଟ ବାବୁ କଥା କହି ତୁମଠାରୁ ଯାହା ପାରୁଛି ଆଦାୟ କରୁଛି ।

- ଗାଳି ଦେଲା କାହିଁକି ?

- ଗାଧୁଆ ପାଣି ବହୁତ ଗରମ ହୋଇ ଯାଇଥିଲା । ତା'ପରେ ମୁହଁରେ ଲଗାଇବା ପାଇଁ କ'ଣ ସବୁ ବାଟିବାକୁ ଦେଇଥିଲେ । ମୁଁ ବାଟିବାକୁ ଭୁଲି ଯାଇଥିଲି ।

- ତା'ପରେ ?

- ତା'ପରେ ଘର ସବୁ ଝାଡ଼ି ସଫା କଲେ । ଭାଉଜ କହିଲେ, ମୁଁ କ'ଣ ନାହିଁ । ଗୋଟିଏ ଦିନ କାହାକୁ ଦାୟିତ୍ୱ ଦେଇ ତୁମେ ନିଶ୍ଚିନ୍ତ ହୋଇପାରୁନ ? ତା'ପରେ ଦିହିଁଙ୍କ ମଧ୍ୟରେ ଲାଗିଗଲା । କ'ଣ ଠିକ୍ ଜାଣି ପାରିଲିନି - ଇଂରାଜୀରେ ଝଗଡ଼ା କରୁଥିଲେ ।

- ତୁ କାହିଁକି ଏସବୁ ଶୁଣୁଥିଲୁ ?

- ବା ଭଲ କଥା ! ମୁଁ କାହିଁକି ସେମାନଙ୍କ କଥା ଶୁଣିବାକୁ ଯିବି ? ଦିହେଁ ଏତେ ବଡ଼ ପାଟି କରୁଥିଲେ ଯେ, ରାସ୍ତାର ଲୋକ ମଧ୍ୟ ଶୁଣିଛନ୍ତି ।

- ତା'ପରେ ?

- ତା'ପରେ ସାନ ଦିଦି ବଡ ଦିଦିଙ୍କୁ ଫୋନ୍ କଲେ । ସେ ଆସି ଭାଉଜଙ୍କ ମାନ ଭଞ୍ଜନ କଲେ । ତା'ପରେ ଭାଉଜ ସବୁ ସଜାଡ଼ିଲେ । ନଣନ୍ଦ ଭାଉଜ ତିନିଜଣ ମିଶି ଖୁସି ଗପ କରି ଖାଇଲେ । ସେତେବେଳେ କାହାରି ଆଉ ମୁହଁ ହାଣ୍ଡି ହୋଇନି । ତିନି ଜଣ ସାଙ୍ଗ ହୋଇ ବାହାରୁ କେଉଁଠୁ ମୁଣ୍ଡ ବାନ୍ଧି ଭାରି ହସ ଖୁସିରେ ଘରକୁ ଫେରିଲେ ।

- ତୁଲୀର ସାଙ୍ଗ କ'ଣ ମୁଣ୍ଡ ବାନ୍ଧିବା ପାଇଁ ଆସିନି ?

- ନା ।

- ଆଚ୍ଛା ତୁ ଏଥର ଯା ।

ହେମ ଗଲାପରେ ସୁଜାତା ଘରୁ ବାହାରିଲେ । ରେଲିଂ ଧରି ଧରି ଦୋତାଲାକୁ ଉଠିଲେ । କଷ୍ଟ ହେଉଛି-ଭୀଷଣ କଷ୍ଟ । ବ୍ରତୀ ହେବା ପୂର୍ବଦିନ ଭୀଷଣ କଷ୍ଟ ହେଉଥିଲା । ଆଉ କୌଣସି ପିଲାର ଜନ୍ମ ବେଳର କଥା ତାଙ୍କର ମନେ ନାହିଁ । କେବଳ ବ୍ରତୀ ଜନ୍ମ ବେଳର କଥା ଏପରି ମନେ ରହିଛି କାହିଁକି ? ବ୍ରତୀ ତାଙ୍କ ମନରେ ଏକ ଦୁଃସହ ବ୍ୟଥା ହୋଇ ବଞ୍ଚି ରହିବ ବୋଲି ? ପାହାଚର ଏହିଠାରେ ବ୍ରତୀ ସେଦିନ... ଓଃ ତଳ ପେଟରେ କି ଯନ୍ତ୍ରଣା ହେଉଛି ? ତୁଲୀ ବାହାଘର ପରେ ଅପରେଶନ କରାଇବେ ବୋଲି ଭାବିଥିଲେ । ଏବେ ତା' ପୂର୍ବରୁ କରାଇବାକୁ ହେବ ବୋଲି ମନେ ହେଉଛି । ଆଜି ଦିନଟା ଅନ୍ତତଃ ଭଲରେ ଭଲରେ କଟିଗଲେ ସୁଜାତା ରକ୍ଷା ପାଇଯିବେ । କାଲି କଥା କାଲିକୁ ଚିନ୍ତାକରିବେ ।

ଆଜି ପରା ଦିନରେ ନିର୍ବନ୍ଧ ତାରିଖ ରଖିବା ପାଇଁ ତାଙ୍କର ଇଚ୍ଛା ନଥିଲା । କିନ୍ତୁ ତାଙ୍କ ମତ କେହି ନେଇ ନାହାଁନ୍ତି । ଟୋନି କାପାଡ଼ିଆର ମା'ଙ୍କ ଗୁରୁ ସ୍ୱାମୀଜୀ ଆମେରିକାବାସୀ । ସ୍ୱାମୀଜୀ ଏହି ତାରିଖଟି ଠିକ୍ କରି ଦେଇଛନ୍ତି । ଟୋନି ତା' ମା'ର ଅବାଧ ହୋଇପାରିବ ନାହିଁ । କାରଣ ସେ ମା'ର ଟଙ୍କାରେ ବ୍ୟବସାୟ କରୁଛି ।

ଏ ସମ୍ବନ୍ଧରେ ଦିବ୍ୟନାଥ ଅତ୍ୟନ୍ତ ଖୁସି । ଟୋନି ତାଙ୍କରି ପରି ମାତୃଭକ୍ତ । ମା'ର ପ୍ରତ୍ୟେକଟି କଥା ତା' ପାଇଁ ବେଦର ଗାର । ମାତୃଭକ୍ତ ହେବା ଏଠାରେ ଅଧିକରୁ ଅଧିକ । ମାତୃଭକ୍ତ ନ ହୋଇ ମଧ୍ୟ ଟୋନି ପାତ୍ର ହିସାବରେ ତାଙ୍କ ପାଇଁ ଖୁବ୍ ଆକାଂକ୍ଷିତ । ଟୋନି ଜରିଆରେ ଦିବ୍ୟନାଥ 'ଶ-ବେନ୍‌ସନ' କମ୍ପାନୀର ଅଡିଟ୍ (audit)କାମ ପାଇଛନ୍ତି ।

ଟୋନି ପାଇଁ ଦିବ୍ୟନାଥ ଅତ୍ୟନ୍ତ ଦୁର୍ବଳ । କାରଣ ତୁଲୀ ତାଙ୍କର ଅତି ଗେଲବସରର ଝିଅ । ତୁଲୀର ଚେହେରା ଗୁଣ ସବୁ ତାଙ୍କ ମା'ଙ୍କ ପରି । ଟାଇପିଷ୍ଟ ମହିଳା କଥା ତୁଲୀ ସର୍ବପ୍ରଥମେ ଜାଣିଥିଲା । ଜାଣି ମଧ୍ୟ କଥାଟି ଲୁଚାଇଥିଲା । ଏଥିପାଇଁ ତା' ମନରେ ଦିବ୍ୟନାଥଙ୍କ ପ୍ରତି କୌଣସି ବିରାଗ ବା ଘୃଣାଭାବ ଆସି ନାହିଁ । ସେ ମହିଳାଟିର ଏତେଦୂର ସାହସ ହୋଇଥିଲା ଯେ ସେ ଘରକୁ ଫୋନ କରି କହୁଥିଲା,ତାଙ୍କୁ କହିଦେବେ ମୁଁ ଆଜି ସନ୍ଧ୍ୟାରେ ବଜାର ଯିବି । ଏକଥାରେ ସୁଜାତାଙ୍କ ସମସ୍ତ ଶରୀର ଘୃଣାରେ କମ୍ପି ଉଠୁଥିଲା । ତୁଲୀ ସେସବୁ ଫୋନ୍ ଧରିଛି । ତୁଲୀ ଫୋନ୍ ଧରିଲେ ତା' ମାଧ୍ୟମରେ ଖବର ଦିଆଯାଇ ପାରିବ । ଅନ୍ୟ କେହି ଧରିଲେ ଚଳିବ ନାହିଁ, ଏକଥା ଦିବ୍ୟନାଥ ନିଶ୍ଚୟ ମହିଳାଟିକୁ କହିଥିବେ ।

ତୁଲୀ ତା' ବାପାଙ୍କୁ ଠିକ୍ ଖବର ଦେଇଦେଉଥିଲା । ସେ ସମୟରେ ତୁଲୀର ବାପାଙ୍କ ଉପରେ କିପରି ଏକ ଅଧିକାରବୋଧ ଆସି ଯାଇଥିଲା । ତାହାର ତତ୍ତ୍ୱାବଧାନରେ ସନ୍ଧ୍ୟାରେ ଭଲ ପୋଷାକ ପିନ୍ଧି ସେ ବାହାରି ପଡୁଥିଲେ । ତାଙ୍କ ରକ୍ଷିତା ସହିତ ସମୟ ବିତାଇ ଫେରିବା ପରେ (ତୁଲୀ ଜାଣେ ସେମାନେ ସୋମ, ବୁଧ ଓ ଶୁକ୍ରବାର ଦିନ ମିଳିତ ହୁଅନ୍ତି) ତୁଲୀ ବାପା ପାଇଁ ଚିକେନ୍,ସାଲାଡ଼ ଓ ସୁପ୍ ନେଇ ଉପରକୁ ଧାଇଁ ଯାଉଥିଲା । ଏଥିରେ ତା' ଜେଜେ ମା'ଙ୍କ ପରି ଏକପ୍ରକାର ଗର୍ବ ଓ ତୃପ୍ତି ତୁଲୀ ଅନୁଭବ କରୁଥିଲା । ତା' ବାପା ଜଣେ ପୁରୁଷ ପରି ପୁରୁଷ, ବାହାହେଲେ ଏହିପରି ପୁରୁଷ ହିଁ କାମ୍ୟ, ଏସବୁ ତୁଲୀ ଗର୍ବର ସହିତ କହୁଥିଲା । କହୁଥିଲା ଭାଇ ଗୋଟାଏ କାପୁରୁଷ, ସ୍ତ୍ରୀ ର ପଣତକାନିରେ ବନ୍ଧା ।

ଜ୍ୟୋତି ଶ୍ୱଶୁର ଘରର କୌଣସି ଆତ୍ମୀୟଙ୍କଠାରୁ ଏ ସମ୍ବନ୍ଧରେ କଥା ଶୁଣି ଘରେ କହିଥିଲା । ସେତେବେଳେ ତୁଲୀ କହିଥିଲା, ଭାଇ ଦୋଷ ଦେଖାଇବା ଖୁବ୍ ସହଜ । କିନ୍ତୁ ଯେଉଁମାନେ ଏଭଳି ସୁଖ ପାଇଁ ଅନ୍ୟ ଅନ୍ୟ ବାଟ ଖୋଜନ୍ତି, ତାଙ୍କ ଜୀବନରେ ନିଶ୍ଚୟ କିଛି ଅସନ୍ତୋଷ ରହିଥାଏ; ଆଉ ବାପାଙ୍କର ତ ରହିଛି ।

ଆହୁରି କହିଥିଲା- ଜେଜେମା' କହୁଥିଲେ ଜେଜେବାପା କୌଣସି ରାତି ଘରେ

ରହୁ ନଥିଲେ । ତେବେ କ'ଣ ଜେଜେ ବାପା ମଣିଷ ହିସାବରେ କୌଣସି ଗୁଣରେ କମ୍ ଥିଲେ ?

ବ୍ରତୀ ରାମ କି ବିଷ୍ଣୁ କିଛି କହି ନଥିଲା । ତୁଲୀ ଥିଲେ ସେ ଆପାତତଃ ଟେବୁଲରେ ବସି ଖାଏ ନାହିଁ । ତୁଲୀ ଯେତେ ସମୟ ଘରେ ରହୁଥିଲା ସେ ନୀରବ ରହୁଥିଲା । ଏବେ ସୁଜାତା ଜାଣୁଛନ୍ତି ବ୍ରତୀ ସବୁ ଜାଣିଥିଲା । ବୋଧହୁଏ ଏ ବିଷୟରେ ଯିଏଁ ସବୁଠାରୁ ଅଧିକ କ୍ଷୁବ୍‌ଧ ହେବାର କଥା, ସେହି ସୁଜାତା ଯେତେବେଳେ ନୀରବ ରହୁଛନ୍ତି ,ସେତେବେଳ ସେ କାହିଁକି ଏକଥାରେ ପାଟି ଫିଟାଇବ ? କିନ୍ତୁ ସୁଜାତାଙ୍କ ପାଇଁ ତା'ର ଆନୁଗତ୍ୟ ବୋଧରେ କେଉଁଠି ଫାଟ ଦେଖା ଯାଇଥିଲା । ତା' ନହେଲେ ସେ ଘର ଛାଡି ଚାଲି ଯିବାକୁ ସ୍ଥିର କରିଥାନ୍ତା କାହିଁକି ? କ'ଣ ପାଇଁ ସୁଜାତା ଚୁପ୍ ରହିଥିଲେ ଏକଥା ବ୍ରତୀକୁ ଆଉ କେବେ କହି ପାରିବେ ନାହିଁ । ବ୍ରତୀ ମୁହଁକୁ ଚାହିଁ, ବ୍ରତୀ ମଣିଷ ହେବ, ଏହି କଥା ଭାବି ସୁଜାତା ସବୁ ସହ୍ୟ କରିଥିଲେ, ଅଥଚ ବ୍ରତୀ ଯିବା ପୂର୍ବରୁ ଏକଥା ଜାଣି ପାରିଲା ନାହିଁ । ଜାଣିଥିଲେ କ'ଣ ସେ ତା' ମାର୍ଗ ବଦଳାଇ ଥାଆନ୍ତା ? ବଦଳାଇ ନଥାନ୍ତା । ସେ ଭଲଭାବେ ଜାଣନ୍ତି ବଦଳାଇ ନଥାନ୍ତା;ସେଥିପାଇଁ ବ୍ରତୀ ତାଙ୍କର ସନ୍ତାନମାନଙ୍କ ମଧ୍ୟରେ ସବୁଠାରୁ ପ୍ରିୟ । ଛୋଟ ଦିନରୁ ବ୍ରତୀ ମା'ର ମନର ଏଇ ଶୂନ୍ୟତା ଜାଣୁ ଥିଲା ବୋଲି ମା'କୁ କହୁଥିଲା ବଡ଼ ହେଲେ ମୁଁ ତୁମକୁ ଗୋଟିଏ କାଚଘରେ ରଖି ଦେବି । ମାଜିକ୍ କାଚର ଘର ମାଆ । ତୁମେ ସମସ୍ତଙ୍କୁ ଦେଖି ପାରୁଥିବ, ଅଥଚ ତୁମକୁ କେହି ଦେଖି ପାରିବେ ନାହିଁ ।

ସେଥିପାଇଁ ଦଶମ ଶ୍ରେଣୀରେ ପଢ଼ିବା ବେଳେ 'ତୁମର ପ୍ରିୟ ମଣିଷ' ରଚନାରେ ମୋର ପ୍ରିୟ 'ମୋ ମାଆ' ବୋଲି ରଚନା ଲେଖିଥିଲା । ସେହି ବ୍ରତୀ ଯେ କଟା ଜାଗାରୁ ରକ୍ତ ଦେଖିଲେ ଭୟ ପାଉଥିଲା, ସେ ପୁଣି ସବୁ ଓଠ କାମୁଡି ସହ୍ୟ କରୁଥିଲା । ସେହି ବ୍ରତୀର ମୁହଁକୁ ଟିକେ ଆଉଁସି ଦେବେ, ଗେଲ କରିବେ-ଆଖିବୁଜି ଶେଷଥର ପାଇଁ ଆଉଁସି ଦେଖିବେ, ଅନୁଭବ କରିବେ ନାକର ଗଠନ, ଭ୍ରୁଲତାର କଟା ଦାଗ, ମୁଖ ମଣ୍ଡଳ, ଅଥଚ ଟିକେ ଅକ୍ଷତ ଜାଗା ବ୍ରତୀ ମୁହଁରେ ନ ଥିଲା । କେବଳ ଯେ ହତ୍ୟା କରିବା ଉଦ୍ଦେଶ୍ୟ, ତା ନୁହେଁ ; ହତ୍ୟାକୁ ବିଳମ୍ବିତ କରିବା, ନାରକୀୟ ଉଲ୍ଲାସରେ ମରଣମୁଖୀ ମଣିଷ ଯନ୍ତ୍ରଣାରେ ଛଟପଟ ହେବା ଦେଖିବା-ଏ ସମସ୍ତ ନିର୍ମମ ହତ୍ୟାର ନମୁନାର ଅନିବାର୍ଯ୍ୟ ଅଂଶ ବିଶେଷ ।

ହତ୍ୟା କରାଯିବ, ଅଥଚ ଦୋଷୀକୁ ଶାସ୍ତି ହେବନି; କାରଣ ଘାତକମାନେ ଅତ୍ୟନ୍ତ ଧୂର୍ତ୍ତ, ଏହାଠାରୁ ଭୟଙ୍କର ପରିଣତି ଆଉ କେଉଁ ସମାଜରେ ହୋଇପାରେ ? ଯେଉଁମାନେ ତରୁଣମାନଙ୍କୁ ହତ୍ୟା କରିବା ପାଇଁ ମନ୍ତ୍ରଣା ଦେଇଥିଲେ ସେମାନଙ୍କୁ ତ କେହି କାହିଁକି ଚିହ୍ନାଉ ନାହାଁନ୍ତି ? ସେମାନଙ୍କ ଦେହରେ କାହିଁକି କଣ୍ଟାଟିଏ ମଧ୍ୟ ଫୁଟିଲା ନାହିଁ ? ସବୁ ଏପରି ଦୁର୍ବୋଧ୍ୟ କାହିଁକି ?

ବର୍ତ୍ତମାନ କ'ଣ ସେମାନେ ସକ୍ରିୟ ? ଆହୁରି ଅଧିକ ସକ୍ରିୟ ? ନନ୍ଦିନୀ କହିଲା

ପରିସ୍ଥିତି ଶାନ୍ତ ନୁହେଁ । ସୁଜାତା ତ ଶୁଣିଛନ୍ତି, ସେମାନେ ସମସ୍ତ ପ୍ରକାର ପ୍ରଲୋଭନ ଦେଖାନ୍ତି, ନଖ ଭିତରେ ଛୁଞ୍ଚ୍ ଫୋଡ଼ନ୍ତି, ଆଖିରେ ହଜାରେ ପାୱାରର ଆଲୁଅ ପକାନ୍ତି, ଜଘନ୍ୟ ଭାବେ ଦେହର ଗୁପ୍ତ ଅଙ୍ଗରେ ନିର୍ଯାତନା ଦିଅନ୍ତି, ଏଭଳି ଶତସହସ୍ର ଅକଥନୀୟ ଅତ୍ୟାଚାର କରି ମଧ୍ୟ ବ୍ରତୀ ପରି ପିଲାଙ୍କୁ ନୁଆଇଁ ପାରନ୍ତି ନାହିଁ; ଏବେ ମଧ୍ୟ ନୁହେଁ । ସେତେବେଳେ ଜେଲ୍ ହେପାଜତରୁ ପୋଲିସ୍ ହେପାଜତ । ତା'ପରେ ଫାଇଲ୍ ବନ୍ଦ । ପୂର୍ଣ୍ଣଚ୍ଛେଦ । ଅଜୟ ଦତ୍ତର ମା' କହୁଥିଲା । ଏବେ ହାବୁଲ୍ ଦତ୍ତର ଫାଇଲ୍ ବନ୍ଦ କରି ଦେଇପାରନ୍ତି । ସଂଜୀବନର ଛଦ୍ମନାମ ହାବୁଲ । ସଂଜୀବନର ବଡ ଭଉଣୀକୁ ସେମାନେ କହିଥିଲେ - ମା'ଙ୍କୁ ଫଟୋ ଦେଖାଇବ ? ମାସେ ପରେ ଆସ । ଗୋଟିଏ ରିଲରେ ବାସ୍ତରୀଟି ଫଟୋ ଉଠିବ । ଆପଣଙ୍କ ଭାଇର ନମ୍ବର ମାତ୍ର ତିରିଶ । ମାସକ ଭିତରେ ରିଲଟା ଶେଷ ହୋଇଗଲାପରେ ଫଟୋ ଛପା ହେବ ।

ରେଲିଂ ଧରି ଧରି ସୁଜାତା ଉଠିଲେ । ଏହି ରେଲିଂ ଧରି ପିଲାଦିନେ ତଳକୁ ଖସଡ଼ି ଯାଉଥିଲା ବ୍ରତୀ । ହେମ ଦୁଧ ଗ୍ଲାସଧରି ଉପରୁ ଉଠୁଥାଏ, ବ୍ରତୀ ଖସି ତଳକୁ ଓହ୍ଲାଏ । ବଡ ହେବା ପରେ ଏହି ରେଲିଂ ଉପରେ ହାତ ରଖି ବ୍ରତୀ କେତେଥର ତଳକୁ ଓହ୍ଲାଇଛି । ଅଥଚ ଏ ଘରେ ବ୍ରତୀ ଆଉ କେଉଁଠି ନାହିଁ- ଆଜି ବ୍ରତୀ ରହିଛି ଅନ୍ୟାନ୍ୟ ସ୍ଥାନରେ, ଫୁଟପାଥର ଲାଲ୍ ଗୋଲାପରେ, ତୋରଣର ପୁଷ୍ପମାଲ୍ୟରେ, ରାସ୍ତାର ଆଲୋକରେ, ମଣିଷର ହସରେ ତଥା ସମୁ ମା'ର ମୁହଁରେ, ନନ୍ଦିନୀର ଆଖିତଳର ସବୁଦିନିଆ ଛାଇରେ । ସୁଜାତା ବ୍ରତୀକୁ କେଉଁଠି ଖୋଜି ବୁଲିବେ ? ଆଉ ସେ ନିଜ ଶରୀରକୁ ବୋହି ପାରୁ ନାହାଁନ୍ତି । ବ୍ରତୀ କେଉଁ କେଉଁ ସ୍ଥାନରେ ବିସ୍ତାରି ହୋଇ ଯାଇଛି ବୋଲି କ'ଣ ସୁଜାତା ତାକୁ ଖୋଜି-ତାରି ସ୍ମୃତିକୁ ଗୋଟାଉଛନ୍ତି ?

ତୁଲୀ ରୁମ୍‌ରେ ପଶିଲେ ।

ତୁଲୀ ଏବଂ ନୀପା ଏକ ପ୍ରକାର ଗାଢ଼ ନୀଳ ରଙ୍ଗର ବନାରସୀ ଶାଢ଼ୀ ପିନ୍ଧିଛନ୍ତି, ଏକାପରି 'ଷ୍ଟୋଲ' (stole)(ଏକପ୍ରକାର ଅଙ୍ଗବସ୍ତ୍ର-ଯାହା ବେକରୁ ଗୋଡ ପର୍ଯ୍ୟନ୍ତ ଲମ୍ବିଥାଏ) । ଆଜି ପରି ଦିନ ପାଇଁ ଦୁଇ ଝିଅ ଓ ବିନିକୁ ଏହି ଶାଢ଼ୀ ଓ ଷ୍ଟୋଲ ଦିବ୍ୟନାଥ ଉପହାର ଦେଇଛନ୍ତି । ତିନୋଟି ଶାଢ଼ୀ ଓ ତିନୋଟି ଷ୍ଟୋଲ ନ'ଶହ ଟଙ୍କାରୁ ଅଧିକ । ନ'ଶହ ଟଙ୍କାରେ ସମୁ ମା'ପରି ଲୋକଙ୍କର ଅନେକ ଅଭାବ ମେଣ୍ଟିପାରେ ।

ତୁଲୀ ଓ ନୀପା ତାଙ୍କ ଆଡ଼କୁ ଅନାଇଲେ । ଦର୍ପଣରେ ତିନି ଜଣଙ୍କ ପ୍ରତିବିମ୍ବ । ସୁଜାତା ଲକ୍ଷ୍ୟ କଲେ ତାଙ୍କର ଶାଢ଼ୀ ଲୋଚାକୋଚା, ଅବସନ୍ନ ଚେହେରା, କଞ୍ଚାପାଚିଲା କେଶ ଆଲୁଳାୟିତ ।

ତୁଲୀ ଓ ନୀପା ସୁସଜ୍ଜିତ, ସୁନ୍ଦର । ଦୁଇ ଜଣଙ୍କ ମୁହଁରେ ସନ୍ତୋଷ ପ୍ରକଟିତ ହୋଇ ପାରିଥାନ୍ତା । ଅଥଚ ଏତେ ପ୍ରସାଧନର ପ୍ରଲେପ ସେମାନଙ୍କ ମୁହଁରୁ ଅତୃପ୍ତି ଓ ଅସନ୍ତୋଷକୁ

ଲୁଚାଇ ପାରିନାହିଁ ।

- ତୁଲୀ ତୋର ଗହଣା ।

ସୁଜାତା ବ୍ୟାଗ୍ ଖୋଲି ବିଛଣାରେ ଗହଣା ଅଜାଡ଼ିଲେ । ସେଥିରୁ କେତେଟା ଉଠାଇ ନେଇ ବ୍ୟାଗ୍‌ରେ ରଖିଲେ ।

- ସେଗୁଡା ନେଇଗଲ କାହିଁକି ?

- ନୀପା ଓ ବିନିଙ୍କୁ ଯାହା ଯେତିକି ଦେଇଛି ତତେ ମଧ୍ୟ ସେତିକି ଦେଲି ।

- ଦିଦି ଦେଖିଲ ? ମୁଁ କହୁନଥିଲି ।

ନୀପାଂ ସାଙ୍ଗେ ସାଙ୍ଗେ ଖୁବ୍ କୋମଳ, ଗେହ୍ଲାଳିଆ, ଉଦାର, କ୍ଷମାମିଶା ସ୍ୱରରେ କହିଲା - ମା ସେସବୁ ତୁମେ ତୁଲୀକୁ ଦିଅ, ମୁଁ ସତରେ କେବେ ଦାବୀ କରିବି ନାହିଁ ।

- ତୁ ଦାବୀ କରିବା କଥା ଆସିଲା କୁଆଡୁ ?

- ବିନିକୁ ତ ଦେଇଛ ।

- ବ୍ରତୀ ବଞ୍ଚିଥିଲେ ବ୍ରତୀର ସ୍ତ୍ରୀକୁ ଦେଇଥାନ୍ତି । ଗୋଟାଏ ସୁମନକୁ ଏବଂ ଅନ୍ୟଟା ତୋ ଝିଅକୁ ଦେବି ।

- ଆଉ ଗୁଡ଼ାକ ?

- ଯାହା ହେଲେ କରିବି ।

ତୁଲୀ କ୍ରୁଦ୍ଧ ତଥା ଆକ୍ରୋଶ ମିଶା କଣ୍ଠରେ କହିଲା-ଆଶ୍ଚର୍ଯ୍ୟ ! ତୁମେ ଜାଣିଛ ମୁଁ ପୁରୁଣା କାଳିଆ ଗହଣା ଗୁଡିକୁ କେତେ ପସନ୍ଦ କରେ । ଟୋନି ସେଗୁଡିକୁ ମଡ଼େଲ କରି ପିନ୍ଧିବା ପାଇଁ ଗହଣା ତିଆରି କରି ବିଦେଶ ପଠାଇବ, ସବୁତ ତୁମେ ଜାଣିଛ ।

- ତୁ କହୁଥିଲୁ, ମୁଁ ଶୁଣିଥିଲି । ଏବେ ମୁଁ ମତ ପରିବର୍ତ୍ତନ କରିଛି ।

- କିନ୍ତୁ କାହିଁକି ?

- ଏମିତି । ତୋର ଜେଜେ ମା, ବାପା ଦେଇଥିବା ସମସ୍ତ ଗହଣା ତୁମକୁ ଦେଇଦେଲି । ଏ ସମସ୍ତ ମୋ ବାପା ମତେ ଦେଇଥିଲେ, ମୋ ପାଖରେ ଥାଉ ।

- ଚମତ୍କାର ଚିନ୍ତାଧାରା !

- ଏଗୁଡିକ ଅନ୍ୟମାନଙ୍କୁ ଦେବି ବୋଲି ସ୍ଥିର କରିଛି ।

- ତେବେ ଏ ଗୁଡାକ ମତେ ନ ଦେଲେ ମଧ୍ୟ ଚଳିବ ।

- ନ ନବାକୁ ଇଚ୍ଛା କଲେ ନ ନେଇପାରୁ, ଫିଙ୍ଗି ଦେଇପାରୁ । ମୁଁ ଆଜି ତୋ' ସାଙ୍ଗରେ ବେଶି କଥା କହି ପାରିବି ନାହିଁ । ତୁଲୀ ତୁ ପାଟି କରନା । ସକାଳେ ବହୁତ ପାଟି କରିଛୁ ।

- କିଏ କହିଲା-ହେମ ?

- ହଁ । ତୁ ଏ ଘରେ ଯେତିକି ଦିନ ଅଛୁ ହେମକୁ କିଛି କହିପାରିବୁ ନାହିଁ । ହେମକୁ ମୁଁ ଦରମା ଦେଇ ରଖିଛି, ତୋ' ବାପା ରଖିନାହାଁନ୍ତି । ହେମ ବ୍ରତୀକୁ ମଣିଷ କରିଛି । ସେ ଯେତେଦିନ ରହିବ ତୋର ଇଚ୍ଛା ହେଲେ ତା' ସହିତ ଭଲ ବ୍ୟବହାର କରିବୁ କିନ୍ତୁ ତା ପ୍ରତି ଦୁର୍ବ୍ୟବହାର କରିବୁ ନାହିଁ । ଆଜି ପରି ଦିନରେ, ବ୍ରତୀର ଜନ୍ମ ଦିନରେ ସେ ସକାଳୁ କାନ୍ଦୁଛି । ଜାଣି ମଧ ତୁ ତା ସହିତ ଯେଉଁ ବ୍ୟବହାର କରିଛୁ, ତା'ର କ୍ଷମା ନାହିଁ ।

- ଆଜି ପରି ଦିନରେ ! ଆଜିପରି ଦିନରେ ତୁମର ଯେଉଁ ଭାବପ୍ରବଣତା ସେଥି ପାଇଁ ସାରା ଦିନ ବାହାରେ ବୁଲି ବୁଲି ଏବେ ଫେରୁଛ ?

- ମୋ ମତ ନେଇ ତ ତୁମେ ତାରିଖ ସ୍ଥିର କରିନ ? ଟୋନି ମା'ଙ୍କ କଥାରେ କରିଛ ! ମୁଁ ଯେ ଫେରି ଆସିଛି ସେହିଟାହିଁ ବଡ଼କଥା ।

ନୀପା କହିଲା - ମା' ମୋ କଥା ତ ଟିକେ ଭାବିଥାନ୍ତ ? ମୁଁ ନିତି ସମୟ କଟାଇବାକୁ ଏଠାକୁ ଆସେନି ।

ସୁଜାତା ହସି କହିଲେ, ତୁ ସାରା ବର୍ଷରେ କେତେଦିନ ମୋ କଥା ଭାବୁ ? ଏହି ରାସ୍ତାରେ ଗାଡ଼ି ଧରି ସବୁଆଡେ ଯାଉ । ଅମିତ ଗସ୍ତରେ ଗଲେ ତୁ ଘୁରି ବୁଲୁ । ଜ୍ୟୋତିର ଟାଇଫଏଡ୍ ହେଲା, ସୁମନର ଜନ୍ମଦିନ ଗଲା, ତୁ ତ ଥରେ ହେଲେ ଆସି ପାରିନୁ । ମୁଁ ତତେ ଦୋଷ ଦେଉନି । ଏମିତି ହୁଏ । ତେବେ ତୁ ଆସିବୁ ବୋଲି ମୁଁ ଚାହିଁ ବସି ରହିବି ଏ କଥା ତୁ କିପରି ଆଶାକରୁ ?

- ତୁମେ...

- ଆଉ କଥା ବଢ଼ାନା ଡୁଲୀ । ମୁଁ ପ୍ରସ୍ତୁତ ହେବାକୁ ଯାଉଛି ।

ସୁଜାତା ନିଜ କୋଠରୀକୁ ଗଲେ । ଆଲମାରୀ ଖୋଲିଲେ । ଦେହର ପ୍ରତି ଶିରା, ପ୍ରଶିରା ସ୍ନାୟୁ ଆଉ କଥା ମାନୁ ନାହାଁନ୍ତି । କିନ୍ତୁ ଆଜି ସନ୍ଧ୍ୟାର କର୍ତ୍ତବ୍ୟ ତାଙ୍କୁ କରିବାକୁ ହେବ । ନିର୍ଜନ କୋଠରୀ । ସୁଜାତା ସମସ୍ତଙ୍କୁ ବୁଝାଇଚନ୍ତି, ଯିଏ ଯାହାଙ୍କରୁ ପଛକେ ସେ ନିଜ କର୍ତ୍ତବ୍ୟରେ ଅବିଚଳିତ ରହିବେ । ନିଜେ ନିଜକୁ ହିଁ କାରାଦଣ୍ଡ ଦେଇଛନ୍ତି । ଏବେ କ'ଣ ଏ କାରାଗାର ଭାଙ୍ଗି ବାହାରି ପାରିବେ ? ଧଳାଉପରେ ଧଳା ବୁଟିଥିବା କଳା ଧଡି 'ଢ଼ାକା' ଶାଢ଼ୀ ଓ ଧଳା ରଙ୍ଗର ବ୍ଲାଉଜ କାଢ଼ିଲେ ।

ଆଲମାରୀ ବନ୍ଦ କରି ଗାଧୁଆଘରେ ପଶିଲେ । ଦୁଆର ବନ୍ଦ କରି 'ସାୱାର' ଖୋଲି ତଳେ ବସି ପଡିଲେ । ଶୀତ ଯେତେ ଥିଲେ ମଧ ଯନ୍ତ୍ରଣା ଯୋଗୁଁ ଜଣା ପଡୁନି । ଥଣ୍ଡା ପାଣି ଦେହକୁ ଆରାମ ଦେଉଛି । ବରଫ ଶୀତଳ ଜଳ । ବରଫ, ବରଫଖଣ୍ଡ । ବରଫ ଖଣ୍ଡ ଉପରେ ସଦ୍ୟମୃତ ରକ୍ତାକ୍ତ ଶରୀର ରଖିଲେ ରକ୍ତ କ୍ଷରଣ ବନ୍ଦ ହୁଏ । ଥଣ୍ଡା ପାଣି । ଶୀତଳ

ବ୍ରତୀର ଆଙ୍ଗୁଠି ପରି, ବ୍ରତୀର କପାଳ, ଛାତି, ହାତ ପରି ଥଣ୍ଡା କୌଣସି ଶୀତଳତାରେ ନାହିଁ । ଆଜି ଦିନସାରା ସେ ବ୍ରତୀ ସହିତ କଟାଇଛନ୍ତି । ବ୍ରତୀର ଆଙ୍ଗୁଠି କେତେ ଥଣ୍ଡା, ହିମଶୀତଳ ଆଖିପତା ନିମୀଳିତ,ଘନ କଳାପଲ୍ଲବ ଆଖି, ତମ୍ବା ସଦୃଶ ଗୌର ବର୍ଣ୍ଣ, ବରଫ ପାଣିରେ ଭିଜିଥିବା ଥଣ୍ଡା ମୁଣ୍ଡବାଳ । ଥଣ୍ଡା-ଥଣ୍ଡା-ଶୀତଳ-ଶୀତଳ-ବରଫ-ବରଫ; ଆଜି ଦିନ ସାରା ସେ ବ୍ରତୀ ପାଖରେ ଥିଲେ । ଶ୍ମଶାନରେ ରାତି । ପୋଲିସ୍ ଜଗୁଆଳିରେ ବ୍ରତୀ । ଶ୍ମଶାନରେ ଉଜ୍ଜ୍ୱଳ ଆଲୁଅ, କାନ୍ଥ ବାଡରେ ଲେଖା ନାଆଁ ପରେ ନାଆଁ ଆହୁରି ନାଆଁ-ଆଲୁମିନିୟମର ଦୁଆର ଧଡ୍ କରି ବନ୍ଦ ହେବା-ବ୍ରତୀ, ବିଦ୍ୟୁତ୍ ଚୂଲାରେ ବ୍ରତୀ ପୋଡ଼ା ହେଉଛି । ସାରାଦିନ ବ୍ରତୀ ସହିତ ରହିଥିଲେ । ପାଉଁଶ ନିଅନ୍ତୁ, ଅସ୍ଥି ନିଅନ୍ତୁ, ମାଟିର ଦୀପ ଧରନ୍ତୁ । ଗଙ୍ଗାରେ ବିସର୍ଜନ କରିବାକୁ ହେବ । ସେ ବ୍ରତୀ ସହିତ ସାରା ଦିନ କଟାଇଛନ୍ତି ।

ସାୱାର ବନ୍ଦ କଲେ । ପରବର୍ତ୍ତୀ ସମସ୍ତ କର୍ମ କଲେ । ସ୍ନାୟୁଶିରା, ହୃତ୍‌ପିଣ୍ଡ, ରକ୍ତ-ସବୁ ନା-ନା କହି ବାରଣ କରୁଛନ୍ତି । ସୁଜାତା ଦେହ ମୁଣ୍ଡ ପୋଛିଲେ । ଲୁଗା ବଦଳାଇଲେ । ଦେହରେ ପାଉଡର ପକାଇଲେ । ଲୁଗା, ବ୍ଲାଉଜ ସବୁ ପିନ୍ଧିଲେ । ଓଦା ବାଳରେ ହାତବୁଲାଇ ବାନ୍ଧିଲେ ।

ବ୍ରତୀ କହୁଥିଲା-ସବୁବେଳେ କର୍ତ୍ତବ୍ୟ କିପରି କର ମା ?

ସବୁବେଳେ କର୍ତ୍ତବ୍ୟ କର୍ମ କରିବାକୁ ହେବ, ସୁଜାତା ଏହି ଚିନ୍ତାଧାରା ନେଇ ବଢ଼ିଥିଲେ ।

ସୁଜାତାଙ୍କୁ ଏଭଳି ଭାବରେ ଗଢ଼ା ଯାଇଥିଲା । ଏହିପରି ସେ ନିଜକୁ ମଧ୍ୟ ତିଆରି କରି ନେଇଥିଲେ । କିନ୍ତୁ ଆଜି ମନେ ହେଉଛି ସବୁ-ସବୁ ଯେପରି ବୃଥା । ନିଜକୁ ଅପଚୟ କରିଛନ୍ତି । କାହାକୁ ସେ ସାହାଯ୍ୟ କରିପାରିଲେ ? ଦିବ୍ୟନାଥ, ନୀପା, ତୁଲୀ କାହାକୁ ନୁହେଁ ।

କବାଟ ଖୋଲିଲେ । ଭିତରକୁ ଆସି ଦର୍ପଣ ଆଗରେ ଠିଆ ହେଲେ । ଆଖିତଳର କାଳିମା ଆହୁରି ଗାଢ଼ ହୋଇ ଯାଇଛି । ଥାଉ । ନନ୍ଦିନୀର ଆଖି ତଳେ-ଅନ୍ଧ ପ୍ରାୟ ଆଖି ତଳେ କେତେ ଗାଢ଼ କାଳିମା, ପାହାଡର ଗଡାଣିଆ ଅଞ୍ଚଳର ଚିରଛାୟା ପରି ଛାୟା ।

ନନ୍ଦିନୀ ପାଖକୁ ସୁଜାତା ଆଉ ଯିବେ ନାହିଁ -ଯିବେ ନାହିଁ ସମୁର ମା' ପାଖକୁ ମଧ୍ୟ । ବ୍ରତୀକୁ ତେବେ କୁଆଡ଼େ ଖୋଜି ବୁଲିବେ ? କ'ଣ ଏପରି ଦିନ ଆସିବ ଯେତେବେଳେ ସେ ମଧ୍ୟ ତାକୁ ଆଉ ଖୋଜିବେ ନାହିଁ । ସବୁ ସରିଲା ପରେ ଦିବ୍ୟନାଥ ପୁଅ ଝିଅଙ୍କୁ ନେଇ ଭେଁ ଭେଁ ହୋଇ କାନ୍ଦିଥିଲେ । କହିଥିଲେ 'ତୁମ ମା ଆଖିରେ ଲୁହ ନାହିଁ । ଅସ୍ୱାଭାବିକ ନାରୀ ।'

ସତରେ ତାଙ୍କ ଆଖି ଓଦା ହୋଇ ନଥିଲା ।

ଏମିତି କ'ଣ ଦିନ ଆସିବ ଯେତେବେଳେ ସୁଜାତା ଯେ କୌଣସି ସ୍ଥାନରେ ଯେ କୌଣସି ଲୋକ ପାଖରେ ବସି ବ୍ରତୀକୁ ମନେ ପକାଇ ବାହୁନିବେ ?

ଏକଥା ଭାବି ତାଙ୍କର ଭୟ ହେଲା, ଛାତି ଥରି ଉଠିଲା । ସେହିଦିନ ତା'ହେଲେ ବ୍ରତୀର ପ୍ରକୃତ ମୃତ୍ୟୁ ହେବ । ସେ କ'ଣ ତାଙ୍କର ଦୁଃଖ ଓ ଶୋକକୁ ବନ୍ଦୀ କରି ବ୍ରତୀକୁ ନିଜ ଭିତରେ ବଞ୍ଚାଇ ରଖି ନାହାଁନ୍ତି । ଏବେ ଯେ କିଛି ଶାନ୍ତ ନୁହେଁ, ଜେଲର ପାଚେରୀ ଉଚ୍ଚ ହେଉଛି-ନୂଆ ନୂଆ 'ୱାଚ ଟାୱାର' ବସୁଛି । ବନ୍ଦୀ ମାନଙ୍କ ପାଇଁ ଜେଲ୍‌ଖାନାର ବଡ଼ ଫାଟକ ଖୋଲା ହୁଏ ନାହିଁ । ଅଧ ରାତିରେ ଭ୍ୟାନ୍ ଆସେ । ଉପରୁ କ୍ରେନ୍ ଓହ୍ଲାଏ । ଜନ୍ତୁ ମାନଙ୍କ ପରି ଯନ୍ତ୍ରର ନଖ ଦ୍ୱାରା ବନ୍ଦୀକୁ ଜାବୁଡି ଧରି କ୍ରେନ୍ ଉପରକୁ ଉଠେ, ଜେଲ୍ ଭିତରେ ଓହ୍ଲାଇ ଦିଏ । ଅଷ୍ଟମୀ ପୂଜାର ଉନ୍ମତ୍ତ କଲିକତା । ଗୁଳି-କଳାଗାଡ଼ି - ଗୁଳି-ପଳାଇବାର ଚେଷ୍ଟା-ଗୁଳି-ହାବଲୁ ଦତ୍ତର ଫାଇଲ୍ ବନ୍ଦ କରିଦିଆଯାଇପାରେ - ଶବଯାତ୍ରା-ପଛରେ କୃଦ୍ଧ ଭୟଙ୍କର ସଂକଳ୍ପ ଦ୍ୱାରା କଠିନ ଚେହେରାର ଶବଯାତ୍ରୀ ଚାଲିଛନ୍ତି- ସମସ୍ତେ ତରୁଣ-ତରୁଣ ଚେହେରା । ବ୍ରତୀ କଥା କାହାକୁ କିପରି କହି ସୁଜାତା ନିଜକୁ ସହଜ କରିବେ ? ଶୋକକୁ କିପରି ନିତି ଦିନିଆ ଦେହସୁହା କରିପାରିବେ ?

ଧଳା ଶାଲ୍ ନେଲେ । ଚଟି ପିନ୍ଧି, ପାଣି ପିଇଲେ । କବାଟରେ ଠକ୍ ଠକ୍ ଶବ୍ଦ । ବିନି ଘର ଭିତରେ ମୁହଁ ଦେଖାଇଲା ।

ତୁଲୀ ଓ ନୀପାପରି ମୁଣ୍ଡବନ୍ଧା, ଏକାପରି ଶାଢ଼ୀ ଓ 'ଷ୍ଟୋଲ' । ଏବେ ଏମାନେ ଅନ୍ୟ ସମସ୍ତଙ୍କ ପରି ହେବାକୁ ଚାହାଁନ୍ତି । କିନ୍ତୁ ନିଜ ପରି ହେବାକୁ ନୁହେଁ । ଏହାରି ନାଁ ତେବେ ଫେସନ୍ !

- ମା ସରିଲା ?

- ହଁ । ସୁମନ କ'ଣ କରୁଛି ?

- ଆୟା ପାଖରେ । ଏବେ ଶୋଇବ ।

- ଚାଲ୍ ତଳକୁ ଚାଲ ।

ସୁଜାତା ଲାଇଟ୍ ଲିଭାଇ ବାହାରି ଆସିଲେ । ଶରୀର ଭିତରେ ସ୍ନାୟୁ, ଶିରା ପ୍ରଶିରା, ହୃତ୍‌ପିଣ୍ଡ ଅସହଯୋଗ କରୁଛନ୍ତି । ସୁଜାତା କିନ୍ତୁ ପାହାଚ ଦେଇ ତଳକୁ ଓହ୍ଲାଇଲେ । ଭଲ ନ ଲାଗିଲେ ମଧ୍ୟ ଯାହା କରିବାକୁ ହୁଏ ତା ନାଁ କର୍ତ୍ତବ୍ୟ । ନିଜେ ଖୁବ୍ କର୍ତ୍ତବ୍ୟ ପରାୟଣ ବୋଲି କ'ଣ ମନରେ କେଉଁଠି ଅହଂକାର ଥିଲା ?

ନୀପା ଝିଅ ଜନ୍ମଦିନରେ ବ୍ରତୀ ସୁଜାତାଙ୍କୁ କହିଥିଲା-ଆଖି ଡାକ୍ତରଙ୍କ ପାଖକୁ ଯିବା ବେଶୀ ଦରକାର ।

- ନୀପା ମନ ଖରାପ କରିବ ।

- ମନ ଖରାପ କରିବନି ମା ।

ସୁଜାତା କିଛି କହି ନଥିଲେ ।

- ଦିଦି ମନ ଖରାପ କରିବ, ଏଇଟା ଗୋଟେ ସାଧାରଣ କଥା, ଦିଦିର ଦୁଃଖ ସୁଖ ତୁମର କିମ୍ବା ଆମ ମାନଙ୍କର କୌଣସି ବ୍ୟବହାରରେ ନିର୍ଭର କରେ ନାହିଁ, ସେଇଟା ତ ତୁମେ ଜାଣ ମା । ତମେ ଆଖି ଦେଖାଇବାକୁ ଯିବ ନାହିଁ କାହିଁକି ?

ବ୍ରତୀ ଜାଣୁଥିଲା-ସବୁ କିଛି ଜାଣୁଥିଲା । ଜାଣିଥିଲା ବୋଲି ସେ ସମସ୍ତଙ୍କୁ ଏତେ ସହଜରେ ଏଡ଼େଇ ଦେଇଥିଲା । ଶେଷରେ ସେ ବାହାରିଯାଇ ପୁଣି ଫେରି ଆସିଥିଲା । ସୁଜାତାଙ୍କୁ କହିଥିଲା-ଚାଲ ଆଖି ଡାକ୍ତରଙ୍କ ପାଖକୁ ।

- ତୁ ଯିବୁ ?

- ହଁ, ଚାଲ ।

ଆଖିରେ 'ଆଟ୍ରୋପିନ୍' ପକାଇ ସୁଜାତା ଏକା ଯିବା କଷ୍ଟକର ହେବ, ସେଥିପାଇଁ ବ୍ରତୀ ତାଙ୍କୁ ଡାକ୍ତରଙ୍କ ପାଖକୁ ନେଇ ଯାଇଥିଲା । ତା'ପରେ ସୁଜାତାଙ୍କୁ ନୀପା ଘର ଆଗରେ ଓହ୍ଲାଇ ଦେଇଥିଲା ।

- ତୁ କ'ଣ ଭିତରକୁ ଯିବୁନି ?

ବ୍ରତୀ କେବଳ ହସିଥିଲା । କିଛି କହି ନଥିଲା । ସେ ଦିନ ସେ ଧୋତି ଆଉ ସାର୍ଟ ପିନ୍ଧି ଥିଲା । ସବୁବେଳେ ପ୍ୟାଣ୍ଟ ପିନ୍ଧୁଥିବା ବ୍ରତୀ ଧୋତି ପିନ୍ଧିବାକୁ ପସନ୍ଦ କରେ । କେବଳ ସୁଜାତାଙ୍କ ଆଖିର ଚିକିତ୍ସା କଥା ନୁହେଁ, ଯେତେବେଳେ ବ୍ରତୀ ସମ୍ପୂର୍ଣ୍ଣ ରୂପେ ଅନ୍ୟ ପ୍ରକାରର ହୋଇ ଯାଇଥିଲା ସେତେବେଳେ ଗୋଟେ ଗୋଟେ ବିଷୟ କେବଳ ସେ ଏକୁଟିଆ ମନେ ରଖୁଥିଲା ।

ବ୍ରତୀର ମୃତ୍ୟୁ ପରେ ସୁଜାତା ସେହି ସକାଳୁ କାଣ୍ଟାପୁକୁର ଯାଇଥିଲେ । ଫେରିବାକୁ ଅନେକ ଡେରି ହୋଇଥିଲା ।

ତାଙ୍କର ଧାରଣା ଥିଲା ବ୍ରତୀର ଶବ ପୋଲିସ୍ ତାଙ୍କୁ ଦେବ । କିନ୍ତୁ କୌଣସି ପ୍ରକାରେ ଦିଆଯାଇ ପାରିବ ନାହିଁ ଶୁଣି ସେ ଆଶ୍ଚର୍ଯ୍ୟ ହୋଇନଥିଲେ । ଆଶ୍ଚର୍ଯ୍ୟ ହେବାର ଅବସ୍ଥା ତାଙ୍କର ନଥିଲା । ଫେରି ଆସିଲେ । ତା'ପରେ ଖବର ପାଇ ପୁଣି ଯାଇଥିଲେ । ଦିବ୍ୟନାଥଙ୍କ ଉପର ମହଲରେ ଧରା ଧରି ତଥା କାକୁତିମିନତି ଫଳରେ ଶବବ୍ୟବଚ୍ଛେଦ ସମସ୍ତଙ୍କର ଶୀଘ୍ର ହୋଇଥିଲା । ଶବ ବ୍ୟବଚ୍ଛେଦ ହଲ୍‌ରେ ଡାକ୍ତର ଶବଗୁଡ଼ିକୁ 'ଫର୍ମାଲିନ୍'ରେ ପୋଛି ବିଦ୍ୟୁତ୍ ଗତିରେ ଚିରି ଫାଡ଼ି ଦେଉଥିଲେ । ନ କଲେ ନ ଚଳେ । ସେତେବେଳେ ଦିନରାତି ଅନେକ ଭ୍ୟାନ୍ କାଣ୍ଟାପୁକୁର ଆସୁଥିଲା ।

ଅପରାହ୍ନରୁ କେତେ ରାତି ପର୍ଯ୍ୟନ୍ତ ସୁଜାତାଙ୍କୁ ବସି ରହିବାକୁ ହେବ, ତେଣୁ ଦ୍ୱିପହରେ ଘରକୁ ଫେରିଲେ । ଯେତେବେଳେ ଫେରିଲେ ଘରେ ସମସ୍ତେ ନିସ୍ତବ୍ଧ, ନିର୍ବାକ । ଏହି ଘଟଣାର କିପରି ବ୍ୟାଖ୍ୟା କରାଯିବ ସେ ନେଇ ସମସ୍ତେ ଚିନ୍ତିତ । ସ୍ୱାଭାବିକ ଶୋକରେ

ବିଚଳିତ ହେମ ସମୁ ମା ପରି ମୁଣ୍ଡ ବାଡ଼େଇ କାନ୍ଦି କାନ୍ଦି ବାହୁନିଥିଲା-ସାତ ଦିନର ହୋଇଥିଲା ମୋତେ ତାକୁ ଦେଇଥିଲ ମା' । ତୁମର ତ ବଞ୍ଚିବାର ଆଶା ନଥିଲା । ଆଜି ତାକୁ କେଉଁଠି ରଖି ଆସିଲ । କିଏ ଆଉ ହଜାରେ କାମରେ ବ୍ୟସ୍ତ ରହି ମୋ କଥା ନ ଭୁଲି ମୋ ପାଇଁ ବାତ ଔଷଧ ଆଣିଦେବ । କିଏ କହିବ, ଏତେ ଜିନିଷଧରି ରାସ୍ତା ପାରି ହୋଇ ଚାଲିଯାଇ ପାରିବୁ ? ରିକ୍ସା କରି ଯାଇ ପାରୁନୁ ? କିଏ ରିକ୍ସା ଡାକି ବସେଇ ଦେବ ?

ସେଦିନ ସବୁ କିଛି ଶେଷ ହେବା ପରେ ରାତିସାରା ସୁଜାତାଙ୍କ ମୁଣ୍ଡକୁ କୋଳରେ ଧରି ବସିଥିଲା ହେମ, ଏହି ହେମ । ବ୍ରତୀ ହେମର କଥା କେତେ ବୁଝୁଥିଲା । ଅଥଚ ଦିବ୍ୟନାଥ କହୁଥିଲେ- ଅନୁଭୂତିଶୂନ୍ୟ ପୁଅ ।

ସୁଜାତା କହିବାକୁ ଚାହୁଁଥିଲେ, ବ୍ରତୀରେ ! ଆଜି ମୁଁ ପାହାଚ ଓହ୍ଲାଇ ପାରୁନି । ବ୍ରତୀକୁ କହିବାକୁ ପ୍ରବଳ ଇଚ୍ଛା ହେଉଥିଲା- ତୁ ଯେ କହୁଥିଲୁ ନିଜ ପରି ହେବା ସବୁଠାରୁ କଠିନ । ବ୍ରତୀ- ଆଜି ଯଦି ମୁଁ ନିଜ ପରି ହୋଇ ପାରିଥାନ୍ତି ।

କିନ୍ତୁ ସବୁ ବେଳେ ଯଦି ନିଜ ଇଚ୍ଛା ଅନୁସାରେ ଚଳିଥାନ୍ତେ, ତେବେ ତ ବ୍ରତୀ ଏ ପୃଥିବୀକୁ ଆସି ନଥାନ୍ତା । ଗୋରା ତକ୍‌ତକ ସୁକୋମଳ, ରେଶମୀ ବାଳ ,ଜନ୍ମ ବାଳ ବ୍ରତଘର ବେଳେ ପକେଇ ନଥିଲା । ତା ବଦଳରେ ବ୍ରାହ୍ମଣକୁ ଟଙ୍କା ଦିଆଯାଇଥିଲା । ସେହି ବ୍ରତୀ ପିଲାଦିନେ ସୁଜାତାଙ୍କ ହାତ ଜାବୁଡି ଧରି ରାସ୍ତା ପାରି ହେଉଥିଲା ।

ସୁଜାତା ମୁଣ୍ଡ ହଲେଇଲେ । ଆଗରେ ଡ୍ରଇଁରୁମ୍ । ଲୋକମାନଙ୍କ କଥା, ହସ ତାମସାରେ ସରଗରମ । ଏ ପୃଥିବୀ କ'ଣ କେବଳ ମୃତ ମଣିଷଙ୍କର ? ଯେଉଁ ମୃତ ବ୍ୟକ୍ତିମାନେ ଖାଇପିଇ କଳି କରନ୍ତି, ଲୋଭ ଓ ଲାଳସାରେ ଉନ୍ମତ୍ତ ହୁଅନ୍ତି ?

ବ୍ରତୀର ଶ୍ରଦ୍ଧାଭାଜନ ହେବା ପାଇଁ ଯେଉଁମାନେ ଯୋଗ୍ୟ ନୁହଁନ୍ତି କିମ୍ବା ବ୍ରତୀର ଭଲପାଇବା ପାଇଁ ଉପଯୁକ୍ତ ହୁଅନ୍ତି ନାହିଁ ।

ବ୍ରତୀ ଶ୍ରଦ୍ଧା କରିବାକୁ ଚାହେଁ । ଚାହୁଁଥିଲା ତାକୁ ଅନ୍ୟମାନେ ମଧ ଭଲ ପାଆନ୍ତୁ ।

ଏବେ ବି ଚାହେଁ, କାରଣ ଏବେ ମଧ୍ୟ କିଛି ଶାନ୍ତ ନୁହେଁ । ସମୟ ଏବେ ମଧ୍ୟ ଅଶାନ୍ତ, ଅସ୍ଥିର, କ୍ଷୁବ୍‌ଧ, ଯନ୍ତ୍ରଣାର୍ତ୍ତ, ବିଦ୍ରୋହୀ ଓ ଅସହିଷ୍ଣୁ ।

ସୁଜାତା ପର୍ଦା ଘୁଞ୍ଚାଇ ଘର ଭିତରକୁ ଗଲେ ।

ମିସେସ୍ କାପାଡ଼ିଆ ତାଙ୍କ ଗୁରୁଙ୍କ କଥା କହୁଥିଲେ । ଅଦୂରରେ ନୀପା ହାତରେ ସ୍କଚ୍‌ର ଗ୍ଲାସ ଧରି ଯା ପଛରେ ତା' ପଛରେ ଲୁଚୁଛି-ଖିଲି ଖିଲି କରି ହସୁଛି । ତା'ର ପିଉସୀ ପୁଅ ଦିଅର ବଲାଇ ଦନ୍ତ କଣ୍ଟାରେ ମାଂସ ଖଣ୍ଡେ ଧରି ତା'ପଛରେ ଗୋଡାଉଛି-ନୀପା ପାଟିରେ ମାଂସଟା କୌଣସି ମତେ ଗୁଞ୍ଜି ଦେବ ।

ଟୋନିର ଭଉଣୀ ନର୍ଗିସ ଗେରୁଆ ନାଇଲନ୍ ମିଶା ପଶମର ଅତ୍ୟନ୍ତ ଟାଇଟ ଜାମା

ଓ ପ୍ୟାଣ୍ଟ ପିନ୍ଧି ଢ଼ଳି ଢ଼ଳି ନାଚୁଛି ଏବଂ ମୁହଁ ବୁଲାଇ କାହା ସହିତ କଥା ହେଉଛି । ନର୍ଗିସ ଗୁରୁଙ୍କ ଭକ୍ତ ସେବିକା । ସେ ଭାରତବର୍ଷରେ ସ୍ୱାମୀଙ୍କ ଧର୍ମପ୍ରଚାର କରିବାର ସଂକଳ୍ପ କରିଛି । ନର୍ଗିସ ହାତରେ 'ଲେମନ କର୍ଡିଆଲ୍' । ଅତ୍ୟଧିକ ମଦ୍ୟପାନ ଫଳରେ ତାକୁ ପ୍ରାୟତଃ ନର୍ସିଂ ହୋମରେ 'ଡିପ୍‌ସୋମାନିଆ'ର (dypsomaniac) ଚିକିତ୍ସା ପାଇଁ ଭର୍ତ୍ତି କରାହୋଇଥାଏ; କେବଳ ସେପରି ଗୁରୁତ୍ୱପୂର୍ଣ୍ଣ ଦିନ ମାନଙ୍କରେ ବାହାରକୁ ଆସେ । ତେବେ ଗେରୁଆବସ୍ତ୍ର ଛଡା ସେ ଅନ୍ୟ କିଛି ପିନ୍ଧେ ନାହିଁ ।

ବିନି ଦେଖାଯାଉନି । ତୁଲୀ ନୀପାର ସ୍ୱାମୀ ଅମିତ, ଟୋନି, ଟୋନିର ବନ୍ଧୁମାନଙ୍କ ସହିତ କଥା କହୁକହୁ ଜୋରରେ ହସି ଉଠିଲା । ତା'ପରେ ଗାଲ ଦେଖାଇ ଠିଆ ହେଲା । ଟୋନି ତା'ଗାଲରେ ଚୁମାଦେଲା । ଏହି ଅବସ୍ଥାରେ ଫଟୋ ମଧ୍ୟ ଉଠାଗଲା ।

ମିସେସ୍ କାପାଡିଆ ଧରିଛନ୍ତି ସ୍କଚ୍ ଗ୍ଲାସ । ସୁଜାତା ଓ ଅନ୍ୟମାନେ ତାଙ୍କ କଥା ଶୁଣୁଛନ୍ତି । ସୁଜାତଙ୍କ ମୁହଁରେ ସ୍ମିତ ହସ । ଶରୀର ଅବସନ୍ନ, ମୁଣ୍ଡ କିଛି କାମ କରୁନି-

ସ୍ୱାମୀଜୀଙ୍କୁ ଯେତେବେଳେ ଦେଖିଲି 'ମାଇଁ ଡିଅର' (my dear) ତୁମେ ବିଶ୍ୱାସ କରିବ ନାହିଁ, ମୋର ଅଭ୍ୟନ୍ତରରେ ଯେପରି ନିଆଁ ଜଳିଉଠିଲା । ସେତେବେଳେ ମୁଁ ସ୍ୱାମୀଜୀଙ୍କ ମୁଣ୍ଡ ପଛ ପଟେ ଜ୍ୟୋତିର୍ମଣ୍ଡଳ ଦେଖିଲି । ଠିକ୍ ଯେପରି ଆଲୁଅ ଜଳୁଛି । ଆଲୋକଟା ଏତେ ଉଜ୍ଜ୍ୱଳ-ସତେ ଯେପରି ସହସ୍ର ସୂର୍ଯ୍ୟର ସମାହାର । ପଶମ ଦିଆହୋଇଥିବା ଶବ୍ଦ ଭେଦ କରୁନଥିବା କୋଠରୀରେ ସେମାନେ କୁଶକୁ ଚମଡା ଦଉଡିରେ ବାନ୍ଧି ପକାଇଥିଲେ । ମୁହଁ ଉପରେ ମୁଣ୍ଡ ପଛ ପଟେ ଦୁଇଟି ହଜାର ୱାଟର ଆଲୁଅ ଜଳୁଥିଲା- ଆଉ ଜଳୁଥିଲା । କୁଶର ଦଶଟା ଆଙ୍ଗୁଠିରୁ ନଖ ଉପୁଡା ହୋଇଥିଲା । ଦେହର ପ୍ରତ୍ୟେକଟି ସ୍ନାୟୁ କେନ୍ଦ୍ରରେ ଛୁଞ୍ଚି ଫୁଟାଇ ପୁଣି କାଢ଼ି ଦିଆଯାଇଥିଲା । ଅଠଚାଳିଶ ଘଣ୍ଟା ତା'ପରେ ବାସ୍ତରି ଘଣ୍ଟା, ତା'ପରେ ତାକୁ କୁହାଯାଇଥିଲା ତୁମେ ବର୍ତ୍ତମାନ ମୁକ୍ତ । ସେଠାରୁ ତାକୁ ଘରକୁ ଆଣି ଘର ସାମ୍ନାରେ ଗୁଳି କରାହୋଇଥିଲା । ସେତେବେଳକୁ ତା' ଆଖି ଡୋଳାଯୋଡିକ ତରଳି ଯାଇଥିଲା ।

କିନ୍ତୁ ମିସେସ୍ କାପାଡିଆ ହଜାରେ ସୂର୍ଯ୍ୟଙ୍କ ଜ୍ୟୋତି ଦେଖି ମଧ୍ୟ ଦୃଷ୍ଟି ଶକ୍ତି ହରେଇ ନଥିଲେ । ବରଂ ତାଙ୍କର ଅର୍ନ୍ତଦୃଷ୍ଟି ଉନ୍ମିଳିତ ହୋଇଥିଲା ।

ସ୍ୱାମୀଜୀ ତାଙ୍କ ନିଜ ଉଡାଜାହାଜରେ ଉଡ଼ନ୍ତି । ସେ ମୋତେ ଚାହିଁଲେ ଏବଂ କହିଲେ ଆସ, ମୋ ପାଖକୁ ଆସ । ମୋତେ ମିଆମିରେ ଦେଖାକର । ଆଚ୍ଛା ମୋର ଯେ ମିଆମି ଯିବାର ଅଛି ସେ କିପରି ଜାଣିଲେ, ଡିଅର (dear) ? କହିଲେ, ତୁମେ ସାଥୀରେ ନେଉଥିବା ବହିରେ ଯେଉଁ ଧରଣର ଝିଅ ସମ୍ବନ୍ଧରେ ଉଲ୍ଲେଖ ଅଛି, ତୁମେ ସେହି ଝିଅ ।

କେଉଁ ବହି ଜାଣିଛ ଡିଅର ? ଈଶ୍ୱରଙ୍କ ଅନ୍ୱେଷଣରେ କଳା ଝିଅ (Black girl in search of God) ମୁଁ କଳା ଥିଲି, ଡିଅର (dear) । ମୋର ଆତ୍ମା ମଧ୍ୟ କୃଷ୍ଣବର୍ଣ୍ଣର ଥିଲା ।

ମୁଁ ମୋର ଆରାଧ୍ୟ ଦେବତାଙ୍କୁ ପାଇଗଲି । ସବୁକିଛି ଆଲୋକିତ ଓ ହାଲୁକା ହୋଇଗଲା ।

ନନ୍ଦିନୀ ଭିତରେ କ'ଣ ଗୋଟେ ଯେପରି ମରି ଯାଇଛି । ମରିଯିବା ପରେ ମଣିଷ ଶରୀର ଓଜନିଆ ହୋଇଥାଏ । ବ୍ରତୀର ହାତ କଣ ଓଜନିଆ ଲାଗୁ ଥିଲା । ଅନୁଭୂତିର ମୃତ୍ୟୁ ଘଟିଲେ ବୋଧ ହୁଏ ଶବ ପରି ଭାରି ହୋଇଯାଏ । ସେହି ମୃତ୍ୟୁ ଅନୁଭୂତିର ଓଜନ ବୋହୁଛି ବୋଲି କ'ଣ ନନ୍ଦିନୀ ପାଦ ଘୋଷାରି ଚାଲେ ? ସେ ଆଉ ସ୍ୱାଭାବିକ ହୋଇ ପାରିବ ନାହିଁ, ସ୍ତ୍ରୀ ହୋଇ ପାରିବ ନାହିଁ, ସନ୍ତାନର ଜନନୀ ମଧ୍ୟ ହୋଇ ପାରିବ ନାହିଁ । ଯେଉଁମାନେ ରାସ୍ତାର ଆଲୋକ, ମଣିଷ ଏବଂ ପ୍ରତି ଧୂଳିକଣାକୁ ଭଲ ପାଇଥିଲେ ସେମାନେ ଆଉ କେବେହେଲେ ଜନନୀ ହୋଇ ପାରିବେ ନାହିଁ ? ଯେଉଁମାନେ ସନ୍ତାନ ଧାରଣ କରିବା ସହ୍ୟ କରିପାରନ୍ତି ନାହିଁ, ଏକାଧିକ ପୁରୁଷ ସଙ୍ଗ କରନ୍ତି, ମଦ, ଭାଙ୍ଗ (hashish)ସେବନ କରି ନିଶାସକ୍ତ ହୋଇ ସ୍ନେହଶ୍ରଦ୍ଧା ନ ଥାଇ ଶିଶୁ ମାନଙ୍କୁ ଜନ୍ମ ଦିଅନ୍ତି-ତାହା କେବଳ ଅପଚୟ ନୁହେଁ ତ ଆଉ କ'ଣ !

ତା'ପରଠାରୁ ସ୍ୱାମୀଜୀ ମୋର ଗୁରୁ । କେବଳ ମୋର ନୁହେଁ-ସାରା ପୃଥିବୀର ମଣିଷ ସମାଜ ଦିନେ ସ୍ୱାମୀଜୀଙ୍କର ଶିଷ୍ୟ ହେବେ । ବିବେକାନନ୍ଦଙ୍କ ସଦୃଶ ଆମେରିକା ତାଙ୍କୁ ଆବିଷ୍କାର କରିଛି । ବର୍ତ୍ତମାନ ଭାରତ ତାଙ୍କୁ ଜାଣିବ ।

ଯୀଶୁ ମିତ୍ର ଆଶ୍ଚର୍ଯ୍ୟ ହୋଇ ମିସେସ୍ କାପାଡିଆଙ୍କ କଥା ଶୁଣୁଥିଲେ । ସୁଜାତାଙ୍କୁ କହିଲେ ମୋର ପରିଚୟ କରାଇ ଦିଅ । ମୁଁ ତାଙ୍କୁ ଜାଣିବା ପାଇଁ ବ୍ୟାକୁଳ । ଦୟାକରି ଚିହ୍ନା କରେଇ ଦିଅ । ମିସେସ୍ କାପାଡ଼ିଆ ଇଏ ହେଲେ ଯୀଶୁ ମିତ୍ର ଆମର ବନ୍ଧୁ ।

- ଜାଣି ଅତ୍ୟନ୍ତ ପ୍ରୀତ ହେଲି ।

ମଲି ମିତ୍ର ଫୁସ୍‌ଫୁସ୍ କରି ସୁଜାତାଙ୍କୁ କହିଲେ ଭଦ୍ରମହିଳା ଭାବିଛନ୍ତି ତୁମେ ଇଂରାଜୀ ଜାଣି ନାହଁ, ତେଣୁ ବଙ୍ଗଳାରେ କହୁଛନ୍ତି ! କି ବିଚିତ୍ର । କ'ଣ ପିନ୍ଧି ଆସିଛନ୍ତି ଦେଖୁଛ ? ଉଦ୍ଧତ ନାରୀ । ଆମକୁ ପୁଣି ହୀରା ଦେଖାଉଛି ।

ମିସେସ୍ କାପାଡ଼ିଆଙ୍କ କାନରେ 'ହୀରା' କଥାଟା ପଡ଼ିଗଲା । ହସମିଶା ଉଜ୍ଜ୍ୱଳ ଆଖିରେ ମଲି ମିତ୍ରଙ୍କୁ ଅନାଇଲେ । କହିଲେ ଡାଇମଣ୍ଡ ପିନ୍ଧିବାକୁ ହେବ । ସ୍ୱାମୀଜୀ କହନ୍ତି ହୀରା ହେଲା ଆତ୍ମାର ପବିତ୍ର ପ୍ରତୀକ ।

- ବାସ୍ତବରେ କେଡେ ସୁନ୍ଦର ।

- କିନ୍ତୁ ତୁମକୁ ମୁଁ କ୍ଷମା କରିନି ଡ଼ିଅର (dear) ।

- କାହିଁକି ?

- କୁକୁର ପ୍ରଦର୍ଶନୀରେ ତୁମେ ମୋର 'ଗୋଲ୍‌ଡେନ୍ ରିଟ୍ରାଇଭାର'କୁ (Golden Retriever)ପ୍ରାଇଜ ନେବାକୁ ଦେଇନ ।

- ମୁଁ ନୁହେଁ, ରୋଭାର ।

- ହଁ । ମୁଁ ଏତେ ରାଗି ଯାଇଥିଲି । କିନ୍ତୁ ଯେତେବେଳେ ତୁମ କୁକୁରକୁ ଦେଖିଲି । ସୁଜାତାଙ୍କ ଆଡକୁ ଅନେଇ କହିଲେ ତୁମେ ବିଶ୍ୱାସ କରି ପାରିବ ନାହିଁ, ମୋର ଭିତରଟା ହିଂସାରେ ଜଳିଗଲା ।

ଯୀଶୁ ମିତ୍ର କହିଲେ ସ୍ୱାମୀଙ୍କ କଥା କୁହନ୍ତୁ ।

- ସେ ଭଗବାନ । ସେ ହେଉଛନ୍ତି ସର୍ବ ଶକ୍ତିମାନ । ସେ ଚାହାଁନ୍ତି, ଭାରତବର୍ଷ ଦରିଦ୍ର ହୋଇ ରହୁ । ସେଥିପାଇଁ ମଣିଷ ମାନଙ୍କର ଏତେ ଦୁଃଖ, କଷ୍ଟ; ସେ ଇଚ୍ଛା କଲାମାତ୍ରେ ସମସ୍ତେ ଧନୀ ପାଲଟି ଯିବେ ।

- ସତେ ?

- ନିଶ୍ଚୟ ! ଟୋନି ଓ ତୁଲୀଙ୍କ କଥା ତାଙ୍କୁ ଯେତେବେଳେ ଜଣାଇଲି ସେ ଧ୍ୟାନମଗ୍ନ ହେଲେ । ଧ୍ୟାନ କରି କହିଲେ ଏହି ଝିଅଟି ଭାରି ଅସୁଖୀ । ସେମାନଙ୍କ ଘରକୁ ଗୋଟିଏ ଦୁଷ୍ଟ ଛାୟା ଗ୍ରାସ କରିଛି ।

- ଏ କଥା କହିଲେ ?

- ନିଶ୍ଚୟ । କହିଲେ ଟୋନି ଓ ତୁଲୀ ଯେତେବେଳେ ଆମେରିକା ଯିବେ ସେତେବେଳେ ସେମାନଙ୍କୁ ସେ କେତେ ଗୁଡିଏ ଫୁଲ ଦେବେ । ସେଗୁଡିକ ଘରର ଚାରିପଟେ ପୋତି ଦବାକୁ ହେବ ।

ମଲି ମିତ୍ର ହଠାତ୍ ସୁଜାତାଙ୍କୁ ପଚାରିଲେ ତୁମେ କିପରି ଦୀକ୍ଷା ବଦଳାଇବ, ସୁଜାତା ? ତୁମର ତ ଗୁରୁ ଅଛନ୍ତି ?

-ଅନ୍ୟ ମତ ଗ୍ରହଣ ?

- କାହିଁକି ମିଃ. ଚାଟାର୍ଜୀ ତ କହୁଥିଲେ, ସାରା ପରିବାର ସ୍ୱାମୀଙ୍କ ମତବାଦ ଗ୍ରହଣ କରିବେ ?

- ମୁଁ ଜାଣିନି ତ ?

- ଗୁରୁ ଥିଲେ କ'ଣ ଅନ୍ୟ ଗୁରୁ କରି ହୁଏ ?

- ମଲି, ମୋର କୌଣସି ଗୁରୁ ନାହାଁନ୍ତି ।

ରୁନୁ ଆଉ ବ୍ରତୀ ଥରେ ଗୁରୁଙ୍କ ପାଖକୁ ଯାଇ ନଥିଲେ ? ସେତେବେଳେ ସେମାନେ ସ୍କୁଲରେ ପଢୁଥିଲେ । ପରୀକ୍ଷା ଫଳ ଜାଣିବା ପାଇଁ ?

ସେ ଶାଶୁଙ୍କ କୁଳ ପୁରୋହିତ ଥିଲେ । ଶାଶୁ ତାଙ୍କୁ କହି ଜାତକ କରାଉଥିଲେ ।

ଲକ୍ଷ୍ମୀଶ୍ୱର ମିଶ୍ର । ବ୍ରତୀର ଜାତକ ମଧ୍ୟ ସେ କରିଥିଲେ । ବ୍ରତୀର ଜାତକ ସୁଜାତା କ'ଣ ବାରମ୍ବାର ଦେଖାଇ ନାହାଁନ୍ତି ? ଦୀର୍ଘାୟୁ-ଅବଧ-ବ୍ୟାଧିଭୟ ହୀନ-ଆଘାତ

ଶଙ୍କାହୀନ ? ପରେ ସୁଜାତା ଜାତକଟିକୁ ଚିରି ଫୋପାଡି ଦେଇଥିଲେ ।

ମଲି ମିତ୍ର ମିସେସ୍ କପାଡିଆଙ୍କୁ କହିଲେ ତୁମେ ଜାଣ, ତାଙ୍କ ସାନ ପୁଅ ବ୍ରତୀ...

ସୁଜାତା କହିଲେ, ମିସେସ୍ କପାଡିଆ ମୁଁ ଟିକେ ସେପଟେ ଯାଇ ଦେଖେଁ । ତିନୋଟି ବଡ ହୁଇସ୍କି ନେବା ପରେ ମିସେସ୍ କପାଡ଼ିଆଙ୍କ ମନ ଅତ୍ୟନ୍ତ ଟଳମଟଳ । ଆଖିରେ ସେ ରୁମାଲ ଦେଇ କହିଲେ- ମୁଁ ଜାଣେ ଡିଅର (dear)ତୁମେ କେତେ ଯନ୍ତ୍ରଣା ପାଉ ନଥିବ । ସ୍ୱାମୀ କ'ଣ କହିଲେ ଶୁଣ ଡିଅର ।

- ନିଶ୍ଚୟ ।

ସୁଜାତା ସେଠାରୁ ଉଠି ଗଲେ । ଯିଶୁ ମିତ୍ର କହିଲେ ଆଜି ତା'ର ମୃତ୍ୟୁ ବାର୍ଷିକୀ ।

ମଲି ମିତ୍ର କହିଲେ ସେହି ପିଲା ବ୍ରତୀ, ମୁଁ ତାକୁ କେବେ ବିଶ୍ୱାସ କରି ନଥିଲି ? ଘରୁ ବାହାରିବା ପୂର୍ବରୁ କ'ଣ କହି ଯାଇଥିଲା ଜାଣନ୍ତି ? କହିଥିଲା ଡେରି ହେଲେ ରାତିରେ ରୁନୁ ପାଖରେ ରହିଯିବି । ଅଥଚ ପ୍ରଥମବର୍ଷ ପରଠୁ ରୁନୁ ସହିତ ତା'ର ଯୋଗାଯୋଗ ନଥିଲା । ପରଦିନ ଖବରକାଗଜରେ ତ ବ୍ରତୀର ନାଁ ବାହାରି ନଥିଲା । ଯୀଶୁ କ୍ଲବକୁ ଯାଇଥିଲା । ଭଗବାନଙ୍କର ଅପାର କରୁଣା-ଆମ ଅଞ୍ଚଳ ସମ୍ପୂର୍ଣ୍ଣ ମୁକ୍ତ । କ୍ଲବକୁ ଯାଇ ପାରିଥିଲୁ ନଚେତ୍ ବଞ୍ଚିବା ଅସମ୍ଭବ ହୋଇ ଥାଆନ୍ତା ? ମୁଁ ତ ଖବର କାଗଜ ନିଜେ ପଢୁ ନଥିଲି, ଘରର କାହାକୁ ମଧ୍ୟ ପଢ଼ିବାକୁ ଦେଉ ନଥିଲି । କି ସାଂଘାତିକ ଖବର ସବୁଦିନ ବାହାରୁ ଥିଲା । ଯୀଶୁ ସେଦିନ ଖୁବ୍ ଶୀଘ୍ର କ୍ଲବରୁ ଫେରିଆସି କହିଲେ ଜାଣିଛ, ଚାଟାର୍ଜୀଙ୍କ ପୁଅ ମରିଗଲା ।

- ଓଃ ତୁମକୁ ନିସ୍ତେଜ କଲାଭଳି ଖବର ।

- ତା'ପରେ ମୋ ବଡ଼ ଭାଇ-ସେ ଫୋନ୍ କରି ପଚାରିଲେ, ବ୍ରତୀ ଏଠାକୁ ଆସିଥିଲା ନା ନାହିଁ ? ଶୁଣିବା ମାତ୍ରେ ଯୀଶୁ ରୁନୁକୁ ବମ୍ବେ ପଠାଇ ଦେଲେ ।

- ତୁମେ ଠିକ୍ କରିଥିଲ ।

- ସ୍ୱାଭାବିକ ଭାବେ ଆମେ ସମବେଦନା ଜଣାଇବାକୁ ଆସିଲୁ । ସେତେବେଳେ ଚାଟାର୍ଜୀଙ୍କର ଖୁବ୍ ଖରାପ ସମୟ । ଘଟଣା ଚପେଇବା ପାଇଁ ବିଚରା କେତେ ଧରାଧରି କରିଛନ୍ତି । ଆମକୁ ଏତେ କଷ୍ଟ ହେଉଥିଲା । ଆପଣ ଜାଣନ୍ତି ସୁଜାତା ସମ୍ପୂର୍ଣ୍ଣ ଭାବେ ଅନୁଭୂତିଶୂନ୍ୟ ସ୍ତ୍ରୀ । ସେ ନିଜ ପୁଅକୁ ନଷ୍ଟ କରିଦେଲା । ନହେଲେ ଏପରି ପରିବାରର ପିଲାକେବେ...

ଯୀଶୁ ମିତ୍ର କହିଲେ - ଓଃ, ସେତେବେଳେ କି ଅବସ୍ଥା ହୋଇଛି ? ଆପଣ ସେ ସମୟରେ କେଉଁଠି ଥିଲେ ?

- ଆମେରିକାରେ ।

- ଟୋନି ?

- ଏଠାରେ ଥିଲା । ମଲି କହିବା ଅନୁସାରେ ପାର୍କଷ୍ଟ୍ରିଟ୍, କ୍ୟାମାକ୍ଷ୍ଟ୍ରିଟ୍ ଏବଂ ଅଳ୍ପ କିଛି ଅଞ୍ଚଳ ବିପଦମୁକ୍ତ ଥିଲା । ଟୋନିର ବନ୍ଧୁ ସରୋଜ ପାଲ ସେତେବେଳେ ଅପରେସନ ଦାୟିତ୍ୱରେ । ବିଚକ୍ଷଣ ପିଲା । କି ସାହସ ! ଏମାନଙ୍କୁ ଯେପରି ଧରୁଥିଲା !

- ସତରେ !

ମଲି ମିତ୍ର କହିଲେ କି ପାଗଲାମୀ ! ସମାଜର ରନ୍‌ମାନଙ୍କୁ ତୁମେ ସବୁ ମାରି ଦେଲ । ଲାଭ କ'ଣ ପାଇଲ ? ତୁମେ ମଧ ମଲ । ସାଧୁ ବ୍ୟବସାୟୀ ମାନେ ଭୟରେ ଏଠାରୁ ପୁଞ୍ଜି ଉଠାଇ ଅନ୍ୟ ଜାଗାକୁ ପଳେଇଲେ ।

- ମୋତେ କହୁଛ ? ମୁଁ ଆମେରିକାରୁ ବମ୍ବେ ଆସିଲି । ବମ୍ବେରୁ କଲିକତା ଆସିବା ପାଇଁ ସମସ୍ତଙ୍କ ଭୟ । କଲିକତାରେ ସେତେବେଳେ କୁଆଡ଼େ ବଡଲୋକଙ୍କୁ ଦେଖିଲେ ମାରି ପକାଉଛନ୍ତି । ମୁଁ କ'ଣ କଲି ଜାଣନ୍ତି ?

- କ'ଣ କଲେ ?

ମିସେସ୍ କାପାଡିଆଙ୍କ ମୁହଁ ଆତ୍ମ ବଡ଼ିମାରେ ଫାଟି ପଡୁଥାଏ । ସେ କହିଲେ ସୂତାଶାଢ଼ୀ ଖଣ୍ଡେ ପିନ୍ଧି ସେକେଣ୍ଡ କ୍ଲାସରେ ଚଢ଼ି କଲିକତା ପଳାଇ ଆସିଲି । କହିଲି ମୋ ସ୍ୱାମୀ ଓ ମୋ ପୁଅ ପାଇଁ ମୋର ଯିବା ଦରକାର । ସ୍ୱାମୀଜୀଙ୍କର ଆଶୀର୍ବାଦ ଅଛି-ପୃଥିବୀର କୌଣସି ଶକ୍ତି ମୋତେ ମାରି ପାରିବ ନାହିଁ ।

ଏକଥାର ଉପସଂହାରରେ ଯୀଶୁ ମିତ୍ର ହଠାତ୍ କହିଲେ ସୁଜାତା ବଡ ସୁନ୍ଦର ଦିଶୁଛନ୍ତି ।

ଧଳା-ଶୋକ-ଅପୂର୍ବ ।

ମଲି ମିତ୍ର କହିଲେ, ଏହା ଏକ ଭାଣ୍ଡାମି । ସୁଜାତା ଜାଣିଛି ଯେ ସନ୍ଧ୍ୟାରେ ସମସ୍ତେ ରଙ୍ଗିନ୍ ପିନ୍ଧିଥିବେ । ଅନ୍ୟମାନଙ୍କ ଠାରୁ ପାର୍ଥକ୍ୟ ଦର୍ଶାଇବା ପାଇଁ ସେ ଧଳା ପିନ୍ଧିଛି । କ'ଣ ପ୍ରସାଧନ ବ୍ୟବହାର କରିଛନ୍ତି, କହିଲ ? କିଛିଟା ଅସାଧାରଣ ।

- ପ୍ରସାଧନ ? ପୁଣି ସୁଜାତା କରିବ ? ଡିଅର ମିସେସ୍ କାପାଡିଆ, ସେ କେବେ ପ୍ରସାଧନ କରେ ନାହିଁ ।

- କିନ୍ତୁ କାହିଁକି ? ସେ ତ ଖୁବ ସୁନ୍ଦର ।

ଟୋନି କହିଲା ମୁଁ ମୋର ସୁନ୍ଦର ଶାଶୁଙ୍କ ସହ ପରିଚୟ କରାଇ ଦିଏ ! ମା ଇଏ ଜଣେ ସାମ୍ବାଦିକ । ଆପଣଙ୍କ ସହିତ ଦେଖା କରିବାକୁ ବ୍ୟାକୁଳ । ଟୋନି ବଙ୍ଗଳାରେ ବଙ୍ଗାଳୀ ମିଶାଇ କହିଲା । କଲିକତାରେ ବଢ଼ିଛି, ଭଲ କରି ବଙ୍ଗଳା ଶିଖିଛି ।

ସାମ୍ବାଦିକ ଜଣକ କହିଲେ 'ଚମତ୍କାର ପାର୍ଟି । ଆପଣଙ୍କ ଝିଅର ଶାଢ଼ୀ ଅତି ସୁନ୍ଦର ।'

ମିଃ.ଚାଟାର୍ଜୀଙ୍କ ସଂସ୍କୃତ ଉଚ୍ଚାରଣ କେତେ ଶୁଦ୍ଧ । ଆଦର୍ଶ ବଙ୍ଗାଳୀ ପରିବାର ଆପଣଙ୍କର ।

- ଖାଇଛନ୍ତି ?

- ବହୁତ ଭଲ କରି । ଆଚ୍ଛା ମୁଁ କ'ଣ ଆପଣଙ୍କ ସାକ୍ଷାତକାର ନେଇ ପାରିବି ?

- ମୋର ?

ବମ୍ବେରୁ ପ୍ରକାଶିତ ଗୋଟିଏ ମହିଳା ପତ୍ରିକା ପାଇଁ ମୁଁ ଲେଖେ । ଆପଣ ଏକାଧାରରେ ମା, ସ୍ତ୍ରୀ, ପୁଣି ବ୍ୟାଙ୍କ୍ ଅଫିସର । ଗୃହ ଜଞ୍ଜାଳ ଓ ଚାକିରି ଏକାବେଳେକେ କରାଯାଇ ପାରେ...

- ମୁଁ ଅଫିସର ନୁହେଁ ।

- କିନ୍ତୁ ଟୋନି କହିଲା.....

- କିରାଣୀ ହୋଇ ଆରମ୍ଭ କରିଥିଲି । କୋଡିଏ ବର୍ଷରେ ଏବେ ସେକ୍ସଶନ୍ ଦାୟିତ୍ୱରେ ଅଛି ।

- କେତେ ସୁନ୍ଦର ।

- ତେଣୁ...

- ଆଚ୍ଛା ଆପଣଙ୍କ ପୁଅକୁ ହତ୍ୟା କରାଗଲା, ଜଣେ ଦୁଃଖିନୀ ମାଆର ଦୃଷ୍ଟି କୋଣରୁ

- ନା ମତେ କ୍ଷମା କରନ୍ତୁ ।

ସୁଜାତା ସଙ୍ଗେ ସଙ୍ଗେ ସେଠାରୁ ଉଠିଗଲେ । ମହିଳା ପତ୍ରିକାରେ ସୁଜାତାଙ୍କ ଫଟୋ । ଜଣେ ଶୋକସନ୍ତପ୍ତ ମାଆର କାହାଣୀ । ଏମାନେ କ'ଣ ବ୍ରତୀକୁ ତାଙ୍କ ପାଖରେ ରହିବାକୁ ଦେଉିବ ନାହିଁ ବୋଲି ଠିକ୍ କରିଛନ୍ତି । ଅଥଚ ଆଜି ଦିନସାରା ସେ ବ୍ରତୀ ସହିତ ରହିଛନ୍ତି । ଦେଖନ୍ତୁ.... ମୋ ପୁଅ ଥିଲା..... ବମ୍ବେ ସମାଜର ଶୀର୍ଷସ୍ଥାନରେ ଥିବା ମହିଳା, ଘୋଡା ଦୌଡର ମାଲିକ, ଶିଳ୍ପପତିଙ୍କ ଗୃହିଣୀ, ଚିତ୍ର ତାରକା ଏମାନେ ସମସ୍ତେ ସୁଜାତା ଓ ବ୍ରତୀର କଥା ପଢୁଛନ୍ତି ।

ସୁଜାତା ଅମିତ ପାଖକୁ ଯାଇ ପଚାରିଲେ , ଅମିତ୍ ଖାଇଛ ?

- ହଁ, ମା ।

- ତୁମ ବନ୍ଧୁମାନେ ଠିକ୍ ଖାଇଛନ୍ତି ତ...

- ସମସ୍ତେ ଭଲ କରି ଖାଇଛନ୍ତି ।

ହୁଇସ୍କି ରହିଛି ଅଥଚ ତାଙ୍କ ଜ୍ୱାଇଁ ପିଇ ମାତାଲ ହୋଇନି ଦେଖି ସୁଜାତା ଆଶ୍ଚର୍ଯ୍ୟ ହେଲେ । ଅମିତକୁ ଦିବ୍ୟନାଥ ପସନ୍ଦ କରିଥିଲେ । ନୀପା ତା'ର ସୀତାର ଶିକ୍ଷକଙ୍କ ସହିତ ଘରୁ ପଳାଇଥିଲା । ଦିବ୍ୟନାଥ ତାକୁ ଧରି ଆଣି ମାସକ ଭିତରେ ବାହା କରାଇ ଥିଲେ । ବହୁତ ପଇସା ଖର୍ଚ୍ଚ କରିଥିଲେ । ବଡଲୋକର ବଡ ଚାକିରିଆ, ଦୁର୍ବଳ ଚିତ୍ତ, ଭୟାଳୁ ଗେଲବସର ପୁଅ ଅମିତ । ନୀପାର ସ୍ୱାମୀ ।

ଅମିତ ପାଇଁ ସୁଜାତା ଦୁଃଖ କରନ୍ତି । ଆଗେ ସେ ମଦ ପିଉନଥିଲା, ଏବେ ମାତାଲ ହେବାପାଇଁ ମଦ ପିଏ ।

ତାର ଘରେ ତା'ରି ପିଉସୀ ପୁଅ ଭାଇ ସହିତ ନୀପାର ସମ୍ପର୍କ ପରେ ଅମିତ ମଦ ପିଉଛି ।

ସୁଜାତା ବୁଝିପାରନ୍ତି ନାହିଁ ତା'ର ପିଉସୀ ପୁଅ ଭାଇକୁ କାହିଁକି ଅମିତ କିଛି କୁହେ ନାହିଁ । ଏପରି ପରିସ୍ଥିତିରେ ସ୍ୱାମୀ ସ୍ତ୍ରୀ ସହିତ ଖୋଲାଖୋଲି କଥା ହେବା ବାଞ୍ଛନୀୟ । ଯଦି ଘଟଣାଟା ଅଣ ଆୟତ୍ତ ହୋଇ ନଥାଏ ତେବେ ପିଉସୀ ପୁଅ ଭାଇ ସହିତ କଥାବାର୍ତ୍ତା କରି ସମାଧାନର ବାଟ ବାହାର କରାଯାଇପାରେ । ଏପରିକି ପିଉସୀ ପୁଅ ଭାଇକୁ ମଧ୍ୟ ଘରୁ ତଡ଼ି ଦିଆଯାଇପାରେ ।

ସ୍ତ୍ରୀକୁ ଘରୁ ବାହାରି ଯିବାକୁ କୁହାଯାଇପାରେ । ଆଇନ୍ ଅଛି । ଅଦାଲତ ଅଛି, ଯାହା ଜରିଆରେ ବ୍ୟବସ୍ଥା କରାଯାଇପାରେ ।

ଅମିତ ଏସବୁ କିଛି କରେ ନାହିଁ । କେବଳ ମଦ ପିଏ ।

ଦିବ୍ୟନାଥ ପ୍ରଥା ଅନୁସାରେ 'ଜାମାଇ ଷଷ୍ଠୀ'ରେ ଡାକନ୍ତି ଏବଂ ସେହି ଉପଲକ୍ଷେ ଦୁହେଁ ଏ ଘରକୁ ଆସନ୍ତି । ଅମିତର ଗୁରୁଦେବଙ୍କ ପାଖକୁ ବର୍ଷରେ ଥରେ ଦୁହେଁ ଯାଆନ୍ତି । ଅମିତ ତିନିତାଲାରେ ଶୁଏ । ଦୋତାଲାରେ ଗୋଟିଏ ଘରେ ସେମାନଙ୍କ ଝିଅ ଓ ତା'ର ଆୟା ଶୁଅନ୍ତି । ଦୋତାଲାରେ ହିଁ ପାଖାପାଖି ଦୁଇଟି ଘରେ ବଲାଇ ଓ ନୀପା ଶୁଅନ୍ତି ।

ସବୁ କିଛି ଯେପରି କୀଟ-ଦ୍ରଂଷ୍ଟ, ବ୍ୟାଧି ଗ୍ରସ୍ତ, ପଚାସଢ଼ା ଗଳିତ କ୍ୟାନସର । ମୃତ ସଂପର୍କକୁ ନେଇ ମୃତ ମଣିଷମାନେ ବଞ୍ଚିବାର ବାହାନା କରନ୍ତି । ସୁଜାତାଙ୍କ ମନେ ହେଲା ଅମିତ, ନୀପା, ବଲାଇ ଏମାନଙ୍କ ପାଖକୁ ଗଲେ ଏମାନଙ୍କ ଶରୀରରୁ ଶବର ପଚା ଗନ୍ଧ ହେବ, ଏମାନେ ଭ୍ରୁଣ ଅବସ୍ଥାରୁ ହିଁ ଦୁଷ୍ଟ, ଦୂଷିତ, ବ୍ୟାଧିଗ୍ରସ୍ତ । ଯେଉଁ ସମାଜକୁ ନିଶ୍ଚିହ୍ନ କରିଦେବା ପାଇଁ ବ୍ରତୀ ପ୍ରଭୃତି ଚାହିଁଥିଲେ, ସେହି ସମାଜ ହିଁ ଅନେକ କ୍ଷୁଧିତଙ୍କ ମୁହଁରୁ ଅନ୍ନ କାଢ଼ି ନେଇ ଏଇମାନଙ୍କୁ ସଯତ୍ନରେ ରାଜଭୋଗ ଦେଇ ଲାଳନ କରେ, ବଢ଼ାଏ, ସେହି ସମାଜ ଉପରେ ଏଇଭଳି ମୃତମାନଙ୍କର ଅଧିକାର-ଜୀବିତଙ୍କର ନୁହେଁ । କିନ୍ତୁ ବଲାଇ କ'ଣ କହୁଛି ?

ଏବେ ବାପଧନ- ମାନଙ୍କର ଅବସ୍ଥା କ'ଣ ? ସମସ୍ତେ ସାହି ବସ୍ତି ଛାଡି ପଳେଇଛନ୍ତି । ଧୀମାନର ଅଶ୍ରୁସିକ୍ତ କବିତାରେ ଏହି ବରାନଗରର କଥା ଲେଖା ହୋଇନି ? କାନ୍ଦିଲେ କ'ଣ ହେବ ? ସିଧା କଥା ହେଲା ବରାନଗରରେ ଶତାଧିକଙ୍କୁ ଟିକି ଟିକି କରି କାଟିବା ଫଳରେ ବରାନଗର ଅବସ୍ଥା ଏବେ ଶାନ୍ତ । ଯେତେଦିନ କାଟି ନଥିଲେ ସେହି ସମୟରେ ପରିସ୍ଥିତି କେତେ ଅଶାନ୍ତ ଥିଲା ।

ଧୀମାନ୍ କିଏ ? ଧୀମାନ୍ ରାୟ, ଯାହାକଥା ନନ୍ଦିନୀ କହୁଥିଲା । ଗୋଟିଏ ଅତି ଗୋରା ତକତକ ଝିଅ, ପଶମର ମ୍ୟାକ୍ସି ପିନ୍ଧି ଗିଲାସ ଗୋଟିଏ ହାତରେ ଧରି ଆର ହାତ ବଲାଇ କାନ୍ଧରେ ରଖିବା ସୁଜାତାଙ୍କ ନଜରରେ ପଡ଼ିଲା ।

ସେହି ଝିଅଟି କହିଲା- ଖୁବ୍ ଭଲ ଲେଖା ଲେଖିଛନ୍ତି ନା ?

ବଲାଇ କହିଲା, କୋଡ଼ିଏ ହଜାର ପିଲାଙ୍କୁ ଜେଲ୍‌ରେ ରଖା ହୋଇଛି ବୋଲି ଧୀମାନ ନାକ କାନ୍ଦଣା କାନ୍ଦୁଛି । ମୁଁ କ'ଣ ଏସବୁ ବୁଝି ପାରୁନି ବୋଲି ଭାବୁଛ ? ଯେତେବେଳେ ଶକ୍ତି ପ୍ରୟୋଗ ହେଉଥିଲା ଓ ତାର ପ୍ରତିରୋଧ କରାଯାଉ ଥିଲା ସେତେବେଳେ ଡରରେ ଛାନିଆ ହୋଇ ବାଙ୍ଗ୍‌ଲା ଦେଶ, ବାଙ୍ଗଲା ଦେଶ କହି ଖବର କାଗଜମାନେ କାନ୍ଦୁଥିଲେ । ଯେତେବେଳେ ସବୁ କିଛି ନିୟନ୍ତ୍ରିତ ହୋଇଛି, ସେ ବର୍ତ୍ତମାନ ଅନୁଭବ କରୁଛି ଯେ, ଲେଖିବାଟା ତା ପାଇଁ ନିରାପଦ ।

- ହେଃ ! କ'ଣ ସେ ଲେଖୁଛି । ସେଦିନ ତାର ଗୋଟିଏ କବିତା ପଢ଼ି ତ ମୁଁ କାନ୍ଦି ପକାଇଲି । ଶୁଣନ୍ତୁ ଆପଣଙ୍କ କବିତା ବିଷୟରେ ହିଁ କଥା ହେଉଛି । ଆପଣ କେତେବେଳେ ଲେଖନ୍ତି ? ସବୁବେଳେ ତ ବ୍ୟସ୍ତ । ସତରେ ଆପଣ ଏଭଳି କାରଣ ପାଇଁ ଅଙ୍ଗୀକାରବଦ୍ଧ । ଚାଳିଶ ଟପିଲାଣି ଧୀମାନ ରାୟଙ୍କୁ । ମୋଟା, ଅତି କୁତ୍ସିତ ଚେହେରା । ଅଭିଜ୍ଞ ଅଭିନେତାଙ୍କ ଭଳି ସାଙ୍ଗେ ସାଙ୍ଗେ ମୁହଁରେ ସଙ୍କୋଚ ଭାବ । ମୋଟା କଠୋର କଣ୍ଠରେ କହିଲେ, କବି ଆଉ କ'ଣ ନେଇ ଲେଖିପାରିବ ?

- ବାସ୍ତବରେ - କବିତାଟି ଯେତେବେଳେ ପଢ଼ିଲି, ଅନୁପ ଦତ୍ତ, ତୁମେ ତାଙ୍କୁ ଜାଣ କି ? ଅନୁପ କହିଲା, ସେ ଅନୁପ୍ରାଣିତ ।

- ଜାଣନ୍ତି ! ଏବେ ସମସ୍ତେ ସେମାନଙ୍କ କଥା ହିଁ ଭାବୁଛନ୍ତି । ହ୍ୱିସ୍କିରେ ଚୁମ୍ବନ ଦେବା ପୂର୍ବରୁ ଅତ୍ୟନ୍ତ ନିପୁଣ ଭାବେ ଲହୁଣୀ ଟୁକୁରାରୁ ଖଣ୍ଡିଏ ନେଇ ପାଟିରେ ପୁରାଇଲେ ଧୀମାନ ରାୟ । ସୁଜାତା ଶୁଣିଛନ୍ତି ହ୍ୱିସ୍କି ସହିତ ଯଥେଷ୍ଟ ଲହୁଣୀ ଖାଇଲେ କୁଆଡ଼େ ନିଶା ହୁଏ ନାହିଁ । ଧୀମାନ ରାୟଙ୍କୁ ଦେଖି ଜାଣିଲେ ଯେ ମାତାଲ୍ ହେବା ତା'ର ଉଦ୍ଦେଶ୍ୟ ନୁହେଁ ।

- ଜାଣିଛି, ନୀପା ହଠାତ୍ କହିଲା । ବହୁତ ବେଶୀ ହ୍ୱିସ୍କି ପିଇ ତା'ର ଆଖିରେ, ମୁହଁରେ ଔଦ୍ଧତ୍ୟ ।

- ସତରେ ଜାଣିଛ ? ଅମିତ ବ୍ୟଙ୍ଗ କଲାପରି କହିଲା ।

- ନିଶ୍ଚୟ । ଗୋଟାଏ ଧୁଲାଇ ହୋଇଥିବା କବି, ନିଜତ୍ୱହୀନ, ତା' କବିତାରେ ପୁଣି ଅନୁଭୂତି କ'ଣ ରହିବ ? ମୋ ଭାଇ ମରିଥିଲା, ସେତେବେଳେ ତୁମର ଏହି ଦରଦୀ କବି କ'ଣ କରୁଥିଲେ ? କାହା ପଣତ ତଳେ ଲୁଚିଥିଲେ ? ମତେ ସବୁ ବଲାଇ କହିଛି ।

ବ୍ରତୀକୁ ନେଇ ତୁମେ ସେତେବେଳେ ଅସୁବିଧାରେ ପଡିଥିଲ । ଲଜ୍ଜାରେ ଯେପରି

ସଢ଼ି ଯାଉଥିଲ ।

- କିଏ କହିଲା ?

- ମୁଁ କହୁଛି ?

- ତୁମେତ ମତେ ପଦେ ପଦେ କହି ସାବଧାନ କରିଥିଲ ।

- ମୁଁ ନୁହେଁ ।

- ମିଥ୍ୟାବାଦୀ ।

- ତୁମ କଥା ଫେରାଇ ନିଅ ।

- ନା, କଦାପି ନୁହେଁ ।

- ମୁଁ ଖିଦିରପୁର ଗାଙ୍ଗୁଲୀ ଘରର ପୁଅ । ତୋ ପରି ଗୋଟେ ଶସ୍ତା ବେଶ୍ୟାଠାରୁ -

- ଅମିତ ! ସୁଜାତା ଧୀରେ ଧମକ ଦେଲେ ।

କେତୋଟି ଅସ୍ୱସ୍ତିକର ମୁହୂର୍ତ୍ତ । ବିସ୍ଫୋରଣ ହେଲା !- ବଳିତା ପୋଡୁଛି-ପୋଡ଼ି ପୋଡ଼ି ଯାଉଛି । ବାରୁଦ ସ୍ତୁପ ଛୁଇଁଲା । ପ୍ରାୟ ଏଇ ଛୁଇଁଲା ବୋଧେ । ବଳିତା ବାରୁଦ ଛୁଇଁ ପାରିଲା ନାହିଁ । କାରଣ ନୀପା ହଠାତ୍ ପକ୍ଷୀ ଭଳି କଳକଳରବ କରି ହସରେ ଫାଟି ପଡିଲା ।

- ମା-ତମେ ଯେ କ'ଣ ! ଆମେ ଏପରି ଝଗଡା ଖୁବ୍ ଉପଭୋଗ କରୁ ।

- ତୁମ ନିଜ ଘରେ ଏପରି କର !

ସୁଜାତା ସେଠାରୁ ଚାଲି ଆସିଲେ । ପାର୍ଟି ଜମି ଆସିଲାଣି । ଆନନ୍ଦର ଶିଖର ଦେଶରେ । ସମସ୍ତଙ୍କର ପ୍ରାୟ ମାତାଲ ଅବସ୍ଥା । ଟୋନିର ଭଉଣୀ ଦୁଇଟା 'ଆସ୍‌ଟ୍ରେ', (astray) ଧରି ସ୍ୱାମୀ ସ୍ୱାମୀ କହି ନାଚୁଛି । ତା' ଆଗରେ ଯୀଶୁ ମିତ୍ର ବସି ହଲି ହଲି ହାତ ତାଳି ଦେଉଛନ୍ତି ।

ଅମିତ ଅତ୍ୟନ୍ତ ରାଗିଯାଇ କହିଲା-ତୋ ମା' ସତରେ ଜଣେ ଆନନ୍ଦ ଉଲ୍ଲାସ ନଷ୍ଟ କଲା ଭଳି ମହିଳା । ସେ ଏଥର ମାତାଲ ହେବାକୁ ଠିକ୍ କଲା । ନିଟ୍ ହ୍ୱିସ୍କି ଗିଲାସରେ ଢ଼ାଳି ସବୁତକ କଣ୍ଠସ୍ଥ କଲା ।

ବଲାଇ କହିଲା, ନୀପା ଚାଲ ପଳାଇବା ।

- ଚାଲ ।

- ଶରତ ଘରକୁ ଯିବା । ଆଜି ସେଠାରେ ଫିଲ୍ମ ଚାଲିଥିବ । ସେ ପ୍ୟାରିସ୍‌ରୁ ଅଣା ଯାଇଥିବା ସବୁ ଫିଲ୍ମ -

ବଲାଇ ଓଠ ଓ ଗାଲରେ ଜିଭ ବୁଲାଇ ଏକ ପ୍ରକାର ଅଦ୍ଭୁତ ଶବ୍ଦ କଲା । ଶବ୍ଦଟା ଯେପରି ନଗ୍ନ, ସେପରି ଦୈହିକ । ଶବ୍ଦଟାରୁ ହିଁ ଫିଲ୍ମ କିଭଳି ହୋଇଥିବ ଜଣାଗଲା । ନିଶ୍ଚୟ ଉତ୍ତେଜକ ।

- ଚାଲ ।

ସେମାନେ ବାହାରିଗଲେ ।

ଧୀମାନ ରାୟ ଅମିତକୁ କହିଲେ 'ଆପଣ କିଭଳି ଅଦ୍ଭୁତ ଲୋକ !'

- କାହିଁକି ?

- ବଲାଇ ଆପଣଙ୍କ ସ୍ତ୍ରୀକୁ ନେଇ ଯେଉଁ ଫିଲ୍ମ ଦେଖିବାକୁ ଗଲା-

- ସେଥିରେ ଆପଣଙ୍କ କ'ଣ ଗଲା ?

- ବଲାଇ ! ଯିଏ କ୍ୟାଲେଣ୍ଡର ପାଇଲେ ମଧ...

- ଆରେ ବାବୁ-ଆପଣ ମଦ ଗନ୍ଧ ପାଇଁ ଧନୀ ଲୋକଙ୍କ ସହ ବନ୍ଧୁତା କରନ୍ତି- ସେଥିପାଇଁ ଆସିଛନ୍ତି । ମାଗଣା ମଦ ପାଉଛନ୍ତି, ପିଇଯାନ୍ତୁ । ଆପଣଙ୍କର ଏସବୁ କଥାରେ ଏତେ ମୁଣ୍ଡ ବଥାଉଛି କାହିଁକି ?

- ବଲାଇ ସାଙ୍ଗରେ...

ଅମିତ ଜାଣି ଶୁଣି ଚତୁର କୋକିଶିଆଳି ପରି ଠୋ ଠୋ କରି ହସି କହିଲା, ବଲାଇକୁ ମତେ ଚିହ୍ନାନ୍ତୁ ନାହିଁ, ସେ ପରା ମୋର ପିଉସୀ ପୁଅ ଭାଇ !

- ଭାଇ ?

- ହଁ ମହାଶୟ । ମହିମା ରଞ୍ଜନ ଗାଙ୍ଗୁଲିଙ୍କ ପୌତ୍ର ହେଲି ମୁଁ, ଆଉ ସେ ହେଲା ଦୌହିତ୍ର । ସେ କଥା କହୁ ନାହାଁନ୍ତି ।

- ଫେଟ (fate) ମାନନ୍ତି-ନିୟତି । ଅଦୃଷ୍ଟ ।

- ମୁଁ ସେ ସବୁ ମାନେନି । ଈଶ୍ୱର ମାନେନି, ଅଦୃଷ୍ଟ ମଧ୍ୟ ମାନେ ନି !

- ଅଦ୍ଭୁତ !

- କ'ଣ କହିଲେ ?

- ସବୁ ବାଜେ । ଆପଣଙ୍କ ପରି ନାସ୍ତିକ କାହିଁକି ଦି' ବେଳା ମୋ ଅଫିସ୍ ଗହଳି କରନ୍ତି ।

- ଆପଣ ମାତାଲ ହୋଇଛନ୍ତି ।

- ଆପଣ ହୋଇନାହାଁନ୍ତି । ଭାଗ୍ୟ ମାନନ୍ତୁ ମହାଶୟ, ଭାଗ୍ୟ ଅଛି ।

- କିପରି ?

- ଭାଗ୍ୟ ଛଡ଼ା ଆଉ କ'ଣ ହୋଇପାରେ ? ବଲାଇ ପରିବାରର କେଉଁ ଝିଅକୁ ଅକ୍ଷତ ରଖିଛି ଯେ ମୋ ସ୍ତ୍ରୀକୁ ଛାଡ଼ିଦେବ ? ଆରେ ମହାଶୟ ମୋର ଯିଏ ସାନ ପିଉସୀ ତା'ର ସିଏ ସାନ ମାଉସୀ, ତା'କୁ ନେଇ ତା'ର ବଦମାସି ଆରମ୍ଭ ହୋଇଛି । ନୀପାକୁ ସେ

ଏମିତି  ସହଜରେ ଛାଡ଼ିଦେବ ? ତେବେ ଯାହା ହେଲେ ବି ବଲାଇର ବୁନିଆଦୀ ଅଛି । ସେ ପରିବାର ଛାଡ଼ି ବାହାରେ କେବେ ବଦମାସୀ କରେ ନାହିଁ ।

- ବଲାଇ ସହିତ ନିଜ ସ୍ତ୍ରୀକୁ...

- ବଲାଇ ଖାଲି ମୋ ଭାଇ ନୁହେଁ, ସେ ମୋର ବନ୍ଧୁ ମଧ୍ୟ । ତା'ର ବ୍ୟାପକ ସମ୍ପର୍କ କଥା ଜାଣନ୍ତି । ତାକୁ ରଗେଇଲେ...

- ଆପଣ ମହାଶୟ ଖୁବ୍ ଉଦାର  ।

ସତରେ ଉଦାର ଚେତା ।

ମିଃ : କାପାଡ଼ିଆ କହିଲେ, ମୁଁ ପ୍ରକୃତରେ ଉଦାର ।

ଦିବ୍ୟନାଥ କହିଲେ - ମୁଁ ଜାଣେ ।

ମିଃ : କାପାଡ଼ିଆ ଭାଙ୍ଗ ପଡ଼ି ନଥିବା ସୁଟ୍‌ର କଳା ବୋତାମରେ ଆଙ୍ଗୁଠି ରଖି କହିଲେ, ମୋର ନୀତି ମାନି ଚଳିଲେ ଦେଶର ସମସ୍ତ ସମସ୍ୟାର ସମାଧାନ ହୋଇପାରନ୍ତା ।

- କିପରି ?

ମିଃ : କାପାଡ଼ିଆ ଶୁଦ୍ଧ ବଙ୍ଗଳାରେ କହିଲେ ଏ ଦେଶର ପ୍ରକୃତ ସମସ୍ୟା କ'ଣ କହିଲେ ? ସମନ୍ୱୟ ପ୍ରତିଷ୍ଠା ହେଉ ନାହିଁ । ବହୁଧର୍ମ, ଜାତି, ଭାଷା, ରହିବା ଫଳରେ ଦେଶ ଭାଙ୍ଗି ଯାଉଛି । ଖାଦ୍ୟ କିଛି ସମସ୍ୟା ନୁହେଁ । କେଉଁଠି ଖାଦ୍ୟ ପାଇଁ ଦଙ୍ଗା ହେଉଛି ? ଚାଷୀମାନେ  ଅତ୍ୟନ୍ତ ସ୍ୱଚ୍ଛଳ । ସମସ୍ତେ ରେଡିଓ ରଖିଛନ୍ତି । କର୍ମସଂସ୍ଥାନ ? ବହୁଲୋକ ଏବେ ଚାକିରି ପାଇଛନ୍ତି-ଜାତୀୟ ସମ୍ପଦ ? ସମସ୍ତଙ୍କ ହାତରେ ଯଥେଷ୍ଟ ପଇସା ଅଛି । ନହେଲେ କିପରି ନୂଆ ଘର ତିଆରି ଚାଲିଛି, ସମସ୍ତେ ଗାଡି କିଣୁଛନ୍ତି, ସମସ୍ତେ ଯେତେ ଦାମ୍ ହେଲେ ମଧ୍ୟ ମାଛ ମାଂସ ଖାଉଛନ୍ତି ।

- ସତ କଥା ।

- ଭାଷା କ'ଣ ଗୋଟାଏ ସମସ୍ୟା ? ଯିଏ ଯେଉଁଠି ରହିଛ ସେଠାକାର ଭାଷା ଶିଖି ନିଅ । ମୁଁ ଏଠାରେ ମଦ ବ୍ୟବସାୟ କରେ, କିନ୍ତୁ ବଙ୍ଗଳା ଭାଷା ଶିଖିଛି ।

- ବଙ୍ଗଳା ଭାଷାରେ ଦକ୍ଷତା ହାସଲ କରିଛନ୍ତି ।

- କରିବା ଦରକାର । ଟାଗୋରଙ୍କ ଭାଷା ।

- ସତରେ ।

- ଭାଷା ସମସ୍ୟା ଏହିପରି ସମାଧାନ ହୋଇପାରିବ । ତା'ପରେ ଧର୍ମ ? ଧର୍ମର ଆବଶ୍ୟକତା କ'ଣ ? ମନ୍ଦିର, ମସଜିଦ୍ ପ୍ରଭୃତି ପୋଡ଼ି ଜାଳିଦିଅ । ସ୍ୱାମୀଜୀଙ୍କୁ ଅନୁସରଣ କର । ସେ ଜୀବନ୍ତ ଈଶ୍ୱର । ତାଙ୍କୁ ଆଶ୍ରା କର ।

- ଯାହା କହିଲେ ସତ୍ ।

---

- ଆମେ ସ୍ୱାମୀଜୀଙ୍କର ସନ୍ତାନ । ଭାରତରେ ଦିଲ୍ଲୀ, ବମ୍ବେ, କଲିକତା, ମାନ୍ଦ୍ରାଜ୍‌ରେ ଅଫିସ୍ ଖୋଲୁଛୁ । ଛ'ହଜାର ଲୋକଙ୍କୁ ନିଯୁକ୍ତି ଦେବୁ । ଉଡାଜାହାଜ ଓ ହେଲିକପ୍‌ଟର କିଣିବୁ । ଭାରତର ସମସ୍ତ ଭାଷାରେ ସ୍ୱାମୀଙ୍କ ସନ୍ଦେଶ ଛପାଯିବ । ଭାରତର ଚତୁର୍ଦ୍ଦିଗରେ ସନ୍ଦେଶ ଆକାଶ ମାର୍ଗରୁ ପଡିବ । ଖୁବ୍ କମ୍ ସମୟରେ ସମସ୍ତେ ସ୍ୱାମୀଙ୍କୁ ଅନୁସରଣ କରିବେ ।

- ସତ ।

- ଧର୍ମର ସମସ୍ୟା ମଧ୍ୟ ସମାଧାନ ହେଲା । ରହିଲା ଜାତିଗତ ସମସ୍ୟା । ଆଇନ୍ କରାଯାଉ କେହି ନିଜ ରାଜ୍ୟର, ନିଜ ଜାତିର, ନିଜ ଭାଷାଭାଷୀଙ୍କୁ ବିବାହ କରି ପାରିବେ ନାହିଁ । ବଙ୍ଗାଳୀ ବିଭାହେବ ପଞ୍ଜାବୀକୁ ,ଓଡ଼ିଆ ବିଭାହେବ ବିହାରୀକୁ ,ଆସାମୀ ମରାଠୀକୁ ବାସ୍ । ସବୁ ସମସ୍ୟା ଶେଷ ।

- ଟୋନି ସହିତ ତୁଲୀ ଯେପରି...

- ଏଥିପାଇଁ ମୁଁ କୃତଜ୍ଞ ।

- ଇଏ କ'ଣ କହୁଛନ୍ତି ଆଜ୍ଞା ? ମୁଁ କେବଳ କୃତଜ୍ଞ ନୁହେଁ, ଗର୍ବିତ ମଧ୍ୟ ।

- ମୁଁ ମଧ୍ୟ ।

- ମଦ ବ୍ୟବସାୟର ପ୍ରତିଷ୍ଠିତ ମୋଗଲ ବାଦଶାହଙ୍କ ସହ ସଂପର୍କ ହେଲା ।

- ଆପଣ କେଉଁଥିରେ ଊଣା ।

- ଟୋନି ଏକ ମହାନ୍ ପିଲା ।

- ତୁଲୀ ସେହିପରି ଏକ ଝିଅ ।

- ଜ୍ୟାକି ପୁଅ ହିସାବରେ ମହତ୍ ।

- ଜ୍ୟୋତି ମଧ୍ୟ ।

- ନୀପା ମଧ୍ୟ ।

- ଆପଣଙ୍କର ଏକ ମହାନ୍ ପରିବାର ।

- ଆପଣଙ୍କର ବଂଶ ପରମ୍ପରା...

- ଆପଣ ତ ଜମିଦାର୍ ।

- ଆମେ କୁଳୀନ ।

- କୁଳୀନ ! ଏହାହିଁ ମହତ ପଣିଆ ।

- ଦିନେ ଆପଣଙ୍କୁ ଆମ ବଂଶ ଲତା ଦେଖାଇବି ।

- ନିଶ୍ଚୟ ।

- ସେତେବେଳେ ଦେଖିବେ ......

- ଗୋଟାଏ କଥା ଚାଟାର୍ଜୀ ।

- କ'ଣ ?

- ମିସେସ୍ ଚାଟାର୍ଜୀ, ଆପଣଙ୍କ ସାନ ପୁଅର ଧକ୍କା...

- ନା, ନା, ସେ ପ୍ରକୃତିସ୍ଥ ହେଲେଣି ।

- ଆପଣଙ୍କ ପୁଅ ହୋଇ ଏପରି...

- କୁ ପ୍ରଭାବ ।

- ତାହା ନିଶ୍ଚୟ ହୋଇଥିବ ।

- କୁସଙ୍ଗ । ଖରାପ ସଂସର୍ଗ ।

- ତାହାହିଁ ହୋଇଥିବ ।

- ଜାଣନ୍ତି ଆମେ ବାପପୁଅ ପରସ୍ପର କେତେ ନିବିଡ ଥିଲୁ ?

- ତୁଲୀଠାରୁ ଶୁଣିଛି ।

- ପିଲାଙ୍କ ପରି । ଆମ ଭିତରେ କିଛି ଲୁଚା ଛପା ନଥିଲା ।

- ତାହା ତ ହେବା କଥା ।

- ମତେ ସେ ଭଗବାନଙ୍କ ଭଳି ଭକ୍ତି କରୁଥିଲା ।

- କରିବନି ? ଏପରି ବାପା ପାଇ ।

- ସେପୁଅ ଯେତେବେଳେ....

- ଓଃ !

- ମୋର ଛାତି ଫାଟି ଯାଇଥିଲା ।

- ଯିବ ତ ।

- ମୁଁ ଯେ କି ପ୍ରକାର ଧକ୍କା ପାଇଲି...

- ଦୁଃଖ କରନ୍ତୁ ନାହିଁ । ସ୍ୱାମୀ କହନ୍ତି-ମୃତ୍ୟୁ କହିଲେ କିଛି ନାହିଁ । ଶରୀର ଆପଣଙ୍କର ମରିଯିବ । ସ୍ୱର୍ଗରେ ଆପଣମାନଙ୍କ ଆତ୍ମା ପରସ୍ପରକୁ ଭେଟିବେ । ସେତେବେଳେ ଦେଖିବେ ପୁଅ ଆପଣଙ୍କର ସେହିପରି ରହିଛି ।

- ସତେ ଦେଖିବି, ସ୍ୱାମୀ କହିଛନ୍ତି ?

- ନିଶ୍ଚୟ !

- ମୁଁ ନିଶ୍ଚୟ ସ୍ୱାମୀଙ୍କୁ ଅନୁସରଣ କରିବି ।

- କରିବେ !

- ଏ ମୋର ସ୍ତ୍ରୀ । ହଇଏ, ଶୁଣୁଛ ଏ କେତେ ଭଲ କଥା ସବୁ କହୁଛନ୍ତି ଶୁଣ, ଶୁଣନା । ଏ ପଟକୁ ଆସ ।

- ମୁଁ ଶୁଣିଛି, ପଛରେ ବସିଥିଲି ।

- ମିସେସ୍ ଚାଟାର୍ଜୀ, ହ୍ୱିସ୍କି ?

- ଧନ୍ୟବାଦ । ମୁଁ ପିଏନି ।

- ଦେହ ଖରାପ ଲାଗୁଛି ।

- ନାଁ ।

ସୁଜାତା ଉଠି ଆସିଲେ । ବିନି ଡାକୁଛି । ଯନ୍ତ୍ରଣା ହେଉଛି, ଯନ୍ତ୍ରଣା କ୍ରମଶଃ ବଢୁଛି । ଯେପରି ବ୍ୟଥାର ତରଙ୍ଗ । ଢ଼େଉ ଭାଙ୍ଗିବା ପରି । ସବୁ କିଛି ଘୁରୁଛି, ଅସ୍ପଷ୍ଟ ଦିଶୁଛି । ପୁଣି ସ୍ପଷ୍ଟ ହୋଇଯାଉଛି । ଜ୍ୟୋତି ବୋଧହୁଏ ଟେପରେକର୍ଡ ଲଗେଇଛି । ଉନ୍ମତ୍ତ ଆଜି ।

- କ'ଣ ହେଲା ବିନି ?

- ମା', ତୁଲୀ ଡାକୁଛି ।

- କାହିଁକି ?

- ଟୋନିଙ୍କର କିଏ ବିଶିଷ୍ଟ ବନ୍ଧୁ ଆସିଛନ୍ତି ।

- କାହାନ୍ତି ?

- ବାହାରେ ।

- ବାହାରେ କାହିଁକି ?

- ଗାଡିରୁ ଓହ୍ଲାଇବେ ନାହିଁ ବୋଲି କହୁଛନ୍ତି ।

- ଓହ୍ଲାଇବାକୁ କହ ।

- ମା' ତୁମ ପାଦ କ'ଣ ଟଳି ଗଲା ?

- ଯନ୍ତ୍ରଣା ହେଉଛି ।

- ତୁମେ ବସ ।

- ନାଁ ।

- ମୁଁ ତାଙ୍କୁ ଭିତରକୁ ଡାକୁଛି ।

- ନା, ମୁଁ ଯାଏଁ ।

- ତୁମେ କାହିଁକି ଯିବ ? ମୁଁ ଯାଉଛି ।

- ତୁଲୀ ରାଗିବ ।

- ତା'ହେଲେ ଚାଲ ।

- ମୁଁ ତାଙ୍କୁ ଗାଡ଼ିରୁ ଓହ୍ଲାଇବାକୁ କହୁଛି । ତୁ ଖାଇବା ପ୍ୟାକେଟ୍ ନେଇ ମୋ ସାଙ୍ଗରେ ଆ । ଓହ୍ଲାଇଲେ ଭଲ, ନହେଲେ ପ୍ୟାକେଟ୍‌ଟା ଦେଇଦେବା, ସେଇଟା ଭଲ ହେବ ।

ଯନ୍ତ୍ରଣା ହେବା, ଯନ୍ତ୍ରଣା ବଢ଼ିବା ସହିତ ଶୀତ କମିଯାଏ । ଗରମ ଲାଗେ ।

ସୁଜାତା ଶାଲଟ୍ରା ରଖିଲେ । ବାହାରକୁ ବାହାରିଲେ ।

ଥଣ୍ଡା ଶୀତ, ଉତ୍ତରା ପବନ, ବଗିଚା ଅନ୍ଧାର । ଏହି ଅନ୍ଧାରରେ ଯଦି କୁଆଡ଼େ ହଜିଯାଇ ପାରନ୍ତେ ? ଫେର ସେହି ଘରକୁ ଯଦି ଯିବାକୁ ନ ହୁଅନ୍ତା ?

ରାସ୍ତା ଉପରେ, ଗେଟ୍ ସାମ୍ନାରେ କଳା ଗାଡ଼ି ।

କଳା ଗାଡ଼ି, କଳାଭ୍ୟାନ୍‌ରେ ଜାଲି । ପଛ କବାଟରେ ଜାଲି, ଝରକା ଜାଲି ଭିତରୁ ହେଲ୍‌ମେଟ ପିନ୍ଧା ମୁଣ୍ଡ ଦେଖାଯାଉଛି । ସାମ୍ନା ସିଟ୍‌ରେ କିଏ ? ଡ୍ରାଇଭର ପାଖରେ ଗାଡି ଗର୍ଜନ କରୁଛି-'ଷ୍ଟାର୍ଟ୍' (start)ବନ୍ଦ କରାହୋଇନି ।

ପରିଷ୍କାର ଧଳା ପୋଷାକ । ପିତଳ ବ୍ୟାଜ୍ । ଡେପୁଟି କମିଶନର ସରୋଜ ପାଲ୍ । ମା'ର ଦୁର୍ଜୟ ସନ୍ତାନ - ସିଂହ ହୃଦୟ ସରୋଜ ପାଲ୍ । ସରୋଜ ପାଲ୍ ତୋ'ର କ୍ଷମା ନାହିଁ- ଆଲୁମିନିୟମ କବାଟରେ ଲେଖା ହୋଇଛି । ଧଡ୍ କରି ବନ୍ଦ ହେଲା । ଭିତରେ ବ୍ରତୀ-ଶାୟିତ, ନିଥର, ହିମ ଶୀତଳ । ସରୋଜ ପାଲ୍ ।

ହଁ, ମୋର ମଧ୍ୟ ମା' ଅଛନ୍ତି ।

ନା, ଆପଣଙ୍କ ପୁଅ ଦୀଘା ଯାଇନି ।

ନା, ଏସବୁ ଘରେ ରଖା ଯାଇ ପାରିବ ନାହିଁ ।

ନା, ଫଟୋ ପାଇବେ ନାହିଁ ।

ପୁଅକୁ ଆପଣ ଭଲ ଶିକ୍ଷା ଦେଇପାରି ନାହାଁନ୍ତି ।

ଆପଣଙ୍କ ପୁଅ ଗୁଣ୍ଡାମାନଙ୍କ ସହିତ ମିଶିଥିଲା ।

ଆପଣଙ୍କ ପୁଅ ଅକ୍ଷମଣୀୟ ଅପରାଧ କରିଥିଲା ।

ଆପଣଙ୍କ ଉଚିତ୍ ଥିଲା- ପୁଅ କଥା ଜାଣି ତା'କୁ ଆମ ପାଖରେ ଆତ୍ମସମର୍ପଣ କରିବା ପାଇଁ କହିବା ।

ନା, ଶବ ପାଇପାରିବେ ନାହିଁ ।

ନା, ଶବ ଆପଣଙ୍କୁ ଦିଆଯିବ ନାହିଁ ।

ସୁଜାତା ଅନାଇଲେ । ସରୋଜ ପାଲ୍ ଅନାଇଲେ । ହଜାରେ ଚୌରାଶୀର ମା' । ବ୍ରତୀ ଚାଟାର୍ଜୀର ମା' । ଏହାଙ୍କ ସାମ୍ନାରେ ପଡିବାକୁ ହେବ ବୋଲି ସେ ଓହ୍ଲାଇବାକୁ ରାଜି ହୋଇ ନଥିଲେ ।

ବିନି ଆଗେଇ ଆସିଲା ।

- ଓହ୍ଲାଇବେ ନାହିଁ ?

- ନା ।

- ଅଳ୍ପ ସମୟ ପାଇଁ ।

- ନା କାମ ଅଛି । ଟୋନି ଓ ତୁଲୀଙ୍କୁ ଶୁଭେଚ୍ଛା ଜଣାଇବେ ।

- ଖାଇବା ପ୍ୟାକେଟ୍‌ଟା ଅନ୍ତତଃ ନେଇ ଯାଆନ୍ତୁ ।

- ଦିଅନ୍ତୁ । ମତେ ଜଲ୍‌ଦି ଯିବାକୁ ହେବ । ଆଚ୍ଛା ନମସ୍କାର । ଷ୍ଟାର୍ଟ ; ଗର୍ଜନ କରି ଗାଡି ଚାଲିଗଲା ।

ଏବେ ମଧ୍ୟ କାମ ? ଏବେ ମଧ୍ୟ ପୋଷାକ ? କଳାଗାଡି, ସାର୍ଟ ତଳେ 'ବୁଲେଟ୍ ପ୍ରୁଫ୍' ପୋଷାକ, ବେଲ୍ଟ ଖୋପରେ ଥିବା ପିସ୍ତଲ, ପଛପଟ ସିଟ୍‌ରେ ହେଲ୍‌ମେଟ ପିନ୍ଧିଥିବା ଜଗୁଆଳି ।

କେଉଁଠି ଅଶାନ୍ତ,କେଉଁଠି କାମ ? ଭବାନୀପୁର, ବାଲିଗଞ୍ଜ, ଗଡ଼ିଆ, ବେହେଲା, ବରାସତ୍, ବରାନଗର, ବାଗବଜାର, କାମ ଅଛି କେଉଁଠି ?

କେଉଁଠି ଦୋକାନ ବଜାର ବନ୍ଦ ହେବ, ଘରକୁ ଘର କବାଟ ପଡିବ, ରାସ୍ତାରୁ ଆତଙ୍କିତ ପଥଚାରୀ, ସାଇକେଲ ଚଢ଼ାଳୀ, ବୁଲା କୁକୁର, ରିକ୍ସାବାଲା ପଳାଇବାର ବାଟ ଖୋଜିବେ ?

'ସାଇରନ୍' ବାଜିବ କେଉଁଠି ? ମଚମଚ ହୋଇ ବୁଟ୍ ଜୋତାର ଶବ୍ଦ ,ପୋଲିସ୍ ଭ୍ୟାନ୍‌ର ଗର୍ଜନ ତଥା ଖଟ୍‌ଖଟ ହୋଇ ଗୁଳିର ଶବ୍ଦ ହେବ କେଉଁଠି ?

କୁଆଡ଼େ ପଳାଇବ, ପୁଣି ବ୍ରତୀ ପଳେଇବ, ବ୍ରତୀ ପଳାଇବ କୁଆଡେ ? କେଉଁଠି ଘାତକ ନାହିଁ, ଗୁଳି ନାହିଁ, ଭ୍ୟାନ୍ ନାହିଁ ଏବଂ ଜେଲ୍ ନାହିଁ ?

ଏହି ମହାନଗରୀ-ଗଙ୍ଗା ବିଧୌତ ବଙ୍ଗଦେଶ-ଜଙ୍ଗଲ ପାହାଡ ଘେରା ଉତ୍ତରବଙ୍ଗ, ବରଫାବୃତ୍ତ ଅଞ୍ଚଳ -ମଧ୍ୟ ବଙ୍ଗର ପାହାଡ, ଶୁଷ୍କ ନଦୀ ଶଯ୍ୟା ଓ ବନ୍ଧବାଡ- ସୁନ୍ଦର ବନର ଲୁଣା ଜଙ୍ଗଲ - ଧାନ କ୍ଷେତ - କଳ କାରଖାନା ଓ କୋଇଲାଖଣି, ଚା'ବଗିଚା, କେଉଁଠି କୁଆଡ଼େ ପଳାଇବ ବ୍ରତୀ ? କୁଆଡ଼େ ଆଉ ଥରେ ହଜିଯିବ ? ଆଉ ପଳାଇ ଯାଆନାରେ ବ୍ରତୀ ! ମୋ' ଛାତିକୁ ଲାଗିଆ, ଫେରିଆ ବ୍ରତୀ, ଆଉ ପଳାନା ।

ସୁଜାତା ଦିନସାରା ଖୋଜି ଖୋଜି ତା'କୁ ପାଇଥିଲେ । ସେ ତ ଏହି ସବୁଥିରେ ଥିଲା, ଅଛି ମଧ୍ୟ । ଆଉ ଥରେ ଯଦି ଭ୍ୟାନ୍ ଆସିବ ,ପୁନଶ୍ଚ 'ସାଇରନ୍'ର ଆକାଶ ଫଟା ବିକଟ ଚିତ୍କାର ଶୁଭିବ ; ତେବେ ବ୍ରତୀ ହଜିଯିବ । ଘରକୁ ଫେରିଆ ବ୍ରତୀ, ଘରକୁ ଆ । ତୁ ଆଉ ପଳାନା । ମା' କୋଳକୁ ଫେରିଆ ବ୍ରତୀ । ଏମିତି କରି ଯାଆନା । ତତେ ଆଉ କେହି ପଳାଇବାକୁ ଦେବେନିରେ । ତୁ ଯୁଆଡ଼େ ଯିବୁ ସେଠୁ ତତେ ଟାଣି ଆଣିବେ । ତୁ କେବଳ

ମୋ ପାଖକୁ ଆ ।

- ମା' ତୁମେ ପଡି ଯାଉଚ ।

ବିନିର ହାତ ଛଡ଼ାଇ ନେଲେ ସୁଜାତା । ଫେରି ଆସି ଘର କବାଟ ସାମ୍ନାରେ ଠିଆ ହେଲେ । ଦୋହଲୁଛି, ସବୁ କିଛି ଦୋହଲୁଛି ,ଘୁରୁଛି - ଚତୁର୍ଦ୍ଦିଗ ଅନ୍ଧାର ଦିଶୁଛି । ଶବ ଗୁଡିକୁ କିଏ ଯେପରି ନଚାଉଛି । ଶବ, ସବୁ ଗୁଡିକ ଶବ-ଧୀମାନ୍, ଅମିତ, ଦିବ୍ୟନାଥ, ମିଃ. କାପାଡ଼ିଆ, ତୁଲୀ, ଟୋନି, ଯୀଶୁମିତ୍ର, ମଲି ମିତ୍ର, ମିସେସ୍ କାପାଡିଆଙ୍କର ।

ଏହି ମାର୍କାମରା ଶବ ଗୁଡିକୁ ନେଇ ପୃଥିବୀର ସମସ୍ତ କବିତା, ଚିତ୍ର, ଲାଲ୍ ଗୋଲାପ, ସବୁଜ ଘାସ, ନିଅନ ଆଲୋକ, ମା'ର ହସ, ଶିଶୁର କାନ୍ଦ-ସବୁ କିଛି ଚିରଦିନ ପାଇଁ, ଅନନ୍ତ କାଳ ପାଇଁ ଏମାନେ ଉପଭୋଗ କରିବେ ବୋଲି କ'ଣ ବ୍ରତୀ ମରିଗଲା । ଏଇଥିପାଇଁ ? ପୃଥିବୀଟାକୁ ଏହିମାନଙ୍କ ହାତରେ ଟେକି ଦେବ ବୋଲି ?

କେବେ ନୁହେଁ ।

ବ୍ରତୀ... ।

ସୁଜାତାଙ୍କର ଏହି ଦୀର୍ଘ ବୁକୁଫଟା ବିଳାପ ଯେପରି ବିସ୍ଫୋରଣ ସଦୃଶ ଅସଂଖ୍ୟ ପ୍ରଶ୍ନ ହୋଇ ଫାଟି ପଡୁଥିଲା । ବିଚ୍ଛୁରିତ ହୋଇଗଲା କଲିକତାର ପ୍ରତିଟି ଘରେ । ସହରକୁ ବିଦୀର୍ଣ୍ଣ କରି ବ୍ୟାପି ଥିଲା ସହରତଳିକୁ । ଛୁଇଁ ଥିଲା ସତେକି ଆକାଶକୁ । ପବନର ସ୍ତରେ ସ୍ତରେ ଖେଳିଗଲା ରାଜ୍ୟର କୋଣରୁ ଅନୁକୋଣ ପର୍ଯ୍ୟନ୍ତ । ପ୍ରସରି ଥିଲା ଏକ ଦିଗରୁ ଅନ୍ୟ ଏକ ଦିଗକୁ । ଇତିହାସର ମୂକସାକ୍ଷୀ ଯେତେବେଳେ ସ୍ତୁପୀକୃତ ଅନ୍ଧାର ଘରେ ଆବଦ୍ଧ, ଇତିହାସର ଏରୁଣ୍ଡୀ ଡେଇଁ ପୌରାଣିକ ବିଶ୍ୱାସର ଭିତ୍ତିଭୂମି ଉପରେ ଥାଇ ସେ କ୍ରନ୍ଦନ ଶୁଣିଥିବା ବିସ୍ମୃତ ଅତୀତ, ସ୍ମରଣୀୟ ଅତୀତ, ଗତକାଲିର ଅତୀତ, ବର୍ତ୍ତମାନ ଓ ଆଗାମୀକାଳ, ସବୁଯେପରି କମ୍ପିଉଠି ଦୋହଲିଗଲା । ପ୍ରତ୍ୟେକଟା ସୁଖୀ ଅସ୍ତିତ୍ୱର ସୁଖ ସତେ ଯେମିତି ଛିଣ୍ଡିପଡିଲା ।

ଏ କ୍ରନ୍ଦନରେ ଅଛି ରକ୍ତର ଗନ୍ଧ, ପ୍ରତିବାଦର ସ୍ୱର ଆଉ ଶୋକର ଅସ୍ତିତ୍ୱ ।

ତା'ପରେ ସବୁ ଅନ୍ଧକାର । ସୁଜାତାଙ୍କର ଶରୀର ତଳେ କଚାଡି ହୋଇ ପଡିଲା ।

ଦିବ୍ୟନାଥ ଚିତ୍କାର କରି ଉଠିଲେ-ତା'ହେଲେ 'ଆପେଣ୍ଡିକ୍ସ'ଟା (appendix) ଫାଟିଗଲା !

❑❑❑



## ଲେଖକ ପରିଚୟ

ଶ୍ରୀଯୁକ୍ତ ଗୋବିନ୍ଦ ଚନ୍ଦ୍ର ସାହୁଙ୍କ ଜନ୍ମ ଯାଜପୁର ଜିଲ୍ଲାର ଅମରାବତୀ ପାଟଣା (ଛଡିଆ) ଗ୍ରାମରେ । ପିତା ଲୋକନାଥ ସାହୁ ଓ ମାତା କଷି ଦେଇ । ୧୯୬୩ ମସିହାରେ 'ବୁର୍ଲା' କଲେଜରୁ ସିଭିଲ୍ ଇଂଜିନିୟରିଂରେ ସ୍ନାତକ ଓ ୧୯୭୬ ମସିହାରେ ରୁର୍କୀ ବିଶ୍ୱବିଦ୍ୟାଳୟରୁ ଉପାଧ୍ୟୁତ୍ତର ଶିକ୍ଷା ଲାଭ । ୧୯୬୩ ମସିହାରେ ସହକାରୀ ଯନ୍ତ୍ରୀ ଭାବେ ଜଳସେଚନ ବିଭାଗରେ ଯୋଗ ଦେଇ ମେ' ୨୦୦୦ ମସିହାରେ ସର୍ବୋଚ୍ଚ ଯନ୍ତ୍ରୀ ( ଜଳ ସମ୍ପଦ ) ଭାବେ ସରକାରୀ ଚାକିରିରୁ ଅବସର ଗ୍ରହଣ ।

୧୯୮୨ ଓ ୧୯୯୯ ରେ ଦୁଇଥର ସରକାରଙ୍କ ଦ୍ୱାରା ମନୋନୀତ ହୋଇ ଜଳସମ୍ପଦର ବ୍ୟବହାର ଓ ସୁପରିଚାଳନା ସମ୍ବନ୍ଧରେ ପ୍ରତ୍ୟକ୍ଷ ଜ୍ଞାନ ଆହରଣ ନିମିତ୍ତ ଆମେରିକା, ଦକ୍ଷିଣ କୋରିଆ, ଫ୍ରାନ୍ସ, ମରୋକୋ ଓ ମେକ୍ସିକୋ ପ୍ରଭୃତି ଦେଶ ଗସ୍ତ । ବୈଷୟିକ ଲେଖା ପାଇଁ ୧୯୯୩ ଓ ୧୯୯୯ ରେ ଇନଷ୍ଟିଚ୍ୟୁସନ୍ ଅଫ୍ ଇଞ୍ଜିନିୟର୍ସ ( ଇଣ୍ଡିଆ ) , ଓଡ଼ିଶା ଶାଖା ତରଫରୁ ଦୁଇଥର ସ୍ୱର୍ଣ୍ଣ ପଦକ ପ୍ରାପ୍ତ। ଓଡ଼ିଆ ଭାଷାରେ ଲିଖିତ 'ଗୃହନିର୍ମାଣ' ପୁସ୍ତକ ପାଇଁ ୧୯୯୬ ମସିହାରେ ବିଜ୍ଞାନ ଏକାଡ଼େମୀ ଦ୍ୱାରା ପୁରସ୍କୃତ।

ପାରାଦ୍ୱୀପ ବନ୍ଦର, ରେଙ୍ଗାଳି ବନ୍ଧ, ସମଲ ବ୍ୟାରେଜ୍, ମହାନଦୀ ବ୍ୟାରେଜ୍, ନରାଜ ବ୍ୟାରେଜ୍ , ମହାନଦୀ-ଚିତ୍ରୋପ୍ଳା ପ୍ରକଳ୍ପ, ଉପର ଇନ୍ଦ୍ରାବତୀ ଯୋଜନା ଓ ରାଜ୍ୟର ଅନେକ ମଧ୍ୟମ ତଥା ବୃହତ୍ ଜଳସେଚନ ଯୋଜନାର ପ୍ଲାନିଂ, ଡ଼ିଜାଇନ୍ ତଥା ନିର୍ମାଣ ସହ ନିବିଡ଼ ଭାବେ ସଂଶ୍ଳିଷ୍ଟ ।

